

SWEARING - IN ...... ରାଜୀବଙ୍କ ଶପଥ ପାଠ



# ଉତ୍କଳ ପ୍ରସଙ୍ଗ

କାର୍ତ୍ତିକ | ୧୯୦୬ ଶକାବ୍ଦ | ୪୧ ଖଣ୍ଡ | ୪ର୍ଥ ସଂଖ୍ୟା | ନଭେମ୍ବର ୧୯୮୪



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର
ବାର୍ଷିକ ଦେୟ ୧୦·୦୦
ପ୍ରତି ଖଣ୍ଡ ୧·୦୦

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭବିବା ଉଚିତ ନୁହେଁ ।

'ଉତ୍କଳ ପ୍ରସଙ୍ଗ' ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଇଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁକ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ଉତ୍କଳ ପ୍ରସଙ୍ଗ

## ସୂଚୀପତ୍ର



# ଅମରକବି ଭର୍ତୃହରି

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ସଂସ୍କୃତ ଭାଷାର ସିଦ୍ଧକବି ଭର୍ତୃହରିଙ୍କ ପ୍ରଣୀତ 'ନୀତି ଶତକ', 'ଶୃଙ୍ଗାର ଶତକ ଓ ବୈରାଗ୍ୟ ଶତକ' କାବ୍ୟଗୁଡ଼ିକ ସଂସ୍କୃତ ସାହିତ୍ୟର ଉତ୍କୃଷ୍ଟତମ ରତ୍ନ । କବି ଏହି ତିନୋଟି କାବ୍ୟରେ ତିନିଶତ ଶ୍ଳୋକ—ଗୀତରେ ମନୁଷ୍ୟ ଜୀବନର ସମସ୍ତ ବିଭାବ ଅତି ସୁନ୍ଦର ଓ ଚମତ୍କାର ଶୈଳୀରେ ବର୍ଣ୍ଣନା କରିଛନ୍ତି । ସଂସ୍କୃତ ଭାଷା ଓ ସାହିତ୍ୟରେ ବୋଧହୁଏ କାଳିଦାସଙ୍କୁ ବାଦ୍ ଦେଲେ, ଅନ୍ୟ କୌଣସି କବି ସାଧାରଣ ବସ୍ତୁକୁ ନେଇ ଏତେ ମନୋରମ ଶୈଳୀରେ ବିଭିନ୍ନ ଉପମା ଓ ଉପମାନ ଛଳରେ ଏପରି ଛୋଟ ଛୋଟ କବିତା ରଚନା କରିନାହାନ୍ତି । ତାଙ୍କର କବିତା ଗୁଡ଼ିକ ସମସ୍ତ ପ୍ରକାର ରସ ଓ ରସିକତାରେ ପରିପୂର୍ଣ୍ଣ । ସଂସ୍କୃତ ସାହିତ୍ୟରେ ତାଙ୍କର ଏହି କୃତିକୁ ଲକ୍ଷ୍ୟ କରି ସଂସ୍କୃତ ସାହିତ୍ୟର ଇତିହାସରଚୟିତା ମିଃ ମ୍ୟାକ୍‌ଡୋନାଲ୍‌ଡ, ଜନ୍ କିଟ୍‌ସ ପ୍ରଭୃତି ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ଯେ ଭର୍ତୃହରି ଯାହା ରଚନା କରିଛନ୍ତି, ତାକୁ ପ୍ରକାଶ କରିବାକୁ ହେଲେ ଇଂରାଜୀ ଭାଷାରେ ତା'ର ଦୁଇଗୁଣ କାବ୍ୟ ପ୍ରୟୋଗ କରିବାକୁ ପଡ଼ିବ ।

ସଂସ୍କୃତ କାବ୍ୟ କବିତାରେ ଉପମା ପାଇଁ କାଳିଦାସ ପ୍ରସିଦ୍ଧ । ତେଣୁ ତାଙ୍କୁ "ଉପମା କାଳିଦାସସ୍ୟ" କୁହାଯାଏ । ପରବର୍ତ୍ତୀ କାଳରେ ସଂସ୍କୃତ କବି ଶ୍ରୀହର୍ଷ, ମାଘ ପ୍ରଭୃତି ଯେଉଁସବୁ ଉପମା ବ୍ୟବହାର କରିଛନ୍ତି, ସେସବୁ ଅଲୌକିକ କିନ୍ତୁ ଭର୍ତୃହରିଙ୍କର ଉପମା ସାଧାରଣ ଜୀବନର ଅନୁଭୂତ ବିଷୟବସ୍ତୁ ଉପରେ ଆଧାରିତ । ଗୋଟିଏ ଛୋଟିଆ କଥାର ଉପମା ଦେଇ ସେ କହିଛନ୍ତି—ଏ ଜୀବନ ହେଉଛି ଅତିଶୟ ଚପଳ, ଅତିଶୟ ଚଞ୍ଚଳ । ଏଇ କଥାଟିକୁ ପ୍ରକାଶ କରିବାକୁ ଯାଇ ସେ ବର୍ଣ୍ଣନା କରିଛନ୍ତି ଯେ ଜଳିଲା ଦୀପର ଶିଖା ସବୁବେଳେ ପବନରେ ଟିକେ ଟିକେ ଦୋହଲୁଥାଏ । ଯଦି ଗୋଟିଏ ପତଙ୍ଗ ସେ ଦୀପଶିଖାଟି ପ୍ରତି ଆକୃଷ୍ଟ ହୋଇ ଆସି, ତା'ର ଡେଣା ସେଥିରେ ପୋଡ଼ିଦିଏ ବା ଜୋରରେ ଉଡ଼ି ଚାଲିଆସେ, ତା'ହେଲେ ପତଙ୍ଗର ଡେଣାର ତରଙ୍ଗରେ ଦୀପର ଶିଖାଟି ଲିଭିଯିବ । ଏଇଟା ହେଉଛି ସ୍ୱାଭାବିକ କଥା । ଆମେ ଦେଖୁଛେ ଦୀପଟି ଜଳୁଛି । ପତଙ୍ଗ ଆସୁଛନ୍ତି ଦୀପ ପାଖକୁ । ସେ ଦୀପର ଫର ଫର ଶିଖା ପତଙ୍ଗର ଡେଣାରେ କ୍ଷଣକ ମଧ୍ୟରେ ଲିଭିଯିବ । ଜୀବନ ହେଉଛି ଠିକ୍ ସେହିପରି । କେତେବେଳେ ଯେ ଜୀବନ ପ୍ରଦୀପ ଲିଭିଯିବ, ତା' କେହି କହିପାରିବେ ନାହିଁ । ଏହିପରି ଅସଂଖ୍ୟ ଉପମାରେ ତାଙ୍କର ରଚନା ଶୈଳୀ ଝଂକୃତ ହୋଇଛି ।

ଆମର ଭାଷା ସଂସ୍କୃତରୁ ଉଦ୍ଭୂତ । ସଂସ୍କୃତ ହେଉଛି ପୃଥିବୀର ସବୁଠାରୁ ସୁନ୍ଦର, ବ୍ୟାକରଣଗତ ଶୁଦ୍ଧ ଏବଂ ଶ୍ରେଷ୍ଠ ବୈଜ୍ଞାନିକ ଭାଷା । ଅନେକ ସମୟରେ ମନେହୁଏ, ଆମର ଭାଷା ଯେମିତି ଅତିଶୟ ଦୁର୍ବଳ, ଆମେ କୌଣସି କଥା ପ୍ରକାଶ କରି-ପାରିବା ନାହିଁ । କଥା କଥାକେ ଆମକୁ ଇଂରାଜୀର ଆଶ୍ରୟ ନେବାକୁ ପଡୁଛି । ଅନ୍ୟ ଯେଉଁ ଭାଷାରେ ଯାହାକୁ ଦୁଇଟି ବାକ୍ୟରେ ପ୍ରୟୋଗ କରିବାକୁ ହେବ, ସଂସ୍କୃତ ଭାଷାରେ ତାକୁ ଗୋଟିଏ ବାକ୍ୟରେ ପ୍ରକାଶ କରାଯାଇ ପାରିବ । ଆନ୍ତର୍ଜାତିକ କ୍ଷେତ୍ରରେ ଯେଉଁ ଇଂରାଜୀ ଭାଷାକୁ ନେଇ ଏତେ ଗର୍ବ କରାଯାଏ, ସେ ଇଂରାଜୀ ଭାଷାର ଐତିହାସିକମାନେ ସଂସ୍କୃତ ସଂପର୍କରେ ଲେଖିଛନ୍ତି—ଇଂରେଜୀ ଭାଷାରେ ଯାହାକୁ ଲେଖିବା ପାଇଁ ଦୁଇ-ଗୁଣ ସ୍ଥାନ ଲାଗିବ, ସଂସ୍କୃତ ଭାଷାରେ ତାକୁ ଅତି ଅଳ୍ପରେ ପ୍ରକାଶ କରାଯାଇ ପାରିବ । କବି ଭର୍ତୃହରି ଏହିଭଳି ରଚନା ଶୈଳୀର ପ୍ରବର୍ତ୍ତକ ଥିଲେ ।

ନୀତି ନଥାଇ କେବେ କୌଣସି ସମାଜରେ ବା କୌଣସି ସଂସ୍କୃତିରେ ଜୀବନର କଳ୍ପନା କରାଯାଇ ନାହିଁ । ରାଜକୀୟ କ୍ଷେତ୍ରରେ ରାଜନୀତି, ଅର୍ଥ ସଂପର୍କରେ ଅର୍ଥନୀତି ଓ ସାମାଜିକ ସ୍ତରରେ ସମାଜନୀତି ଦ୍ୱାରା ଜୀବନର ସମସ୍ତ ବିଭାଗ ପରିଚାଳିତ ।

ସେ ଦୃଷ୍ଟିରୁ ନୀତିଶାସ୍ତ୍ର ହେଉଛି ପ୍ରଥମ ଏବଂ ସେହି ନୀତିଶାସ୍ତ୍ର କଥା ଭର୍ତ୍ତୃହରି କହିଛନ୍ତି । ନୀତି ହେଉଛି ପ୍ରକୃତରେ ସଂସ୍କୃତି । ଆଚରଣ ହେଉଛି ନୀତି । ବିଭିନ୍ନ ଧର୍ମରେ ମନୁଷ୍ୟର ଆଚରଣ କିପରି ହେବ, ସମାଜର ଆଚରଣ କିପରି ହେବ, ତାହା ସେ ପ୍ରକାଶ କରିଛନ୍ତି । ଭାରତୀୟ ଧର୍ମ, ଭାରତୀୟ ଆଚରଣ ଓ ଭାରତୀୟ ସଂସ୍କୃତି କିପରି ହେବା ଦରକାର, ତାହା ଭର୍ତ୍ତୃହରିଙ୍କର ନୀତିଶାସ୍ତ୍ର ଅଧ୍ୟୟନ କଲେ ଉତ୍ତମ ରୂପେ ଉପଲବ୍ଧି କରିହେବ । ଆଚାର ପ୍ରଭୋ ଧର୍ମସ୍ୟ, ଧର୍ମସ୍ୟ ପ୍ରଭୁ ଅଚ୍ୟୁତଃ। ଆଚାର ଧର୍ମ ନୁହେଁ, ଆଚାର ହିଁ ଧର୍ମର ଜନ୍ମ । ଧର୍ମର ପ୍ରଭୁ ହେଉଛନ୍ତି ଅଚ୍ୟୁତ । ଅଚ୍ୟୁତ କିଏ ନା, ଚ୍ୟୁତି ଯାହାଙ୍କର ନାହିଁ । ସେ ରାସ୍ତାର ଏପାଖ ସେପାଖ ହୁଅନ୍ତି ନାହିଁ । ରାସ୍ତାର ଖଣ୍ଡା ଧାରରେ ସେ ଚାଲନ୍ତି ।

ଭର୍ତ୍ତୃହରିଙ୍କର 'ଶୃଙ୍ଗାର ଶତକ'ରେ କେବଳ ଶୃଙ୍ଗାର ତଥା କାମନାର ଜୟଗାନ କରାଯାଇଛି ବୋଲି ଅନେକଙ୍କର ଧାରଣା ଜନ୍ମିପାରେ । କିନ୍ତୁ ତା' ସେଥିରେ କରାଯାଇନାହିଁ । କବି ଶୃଙ୍ଗାର ସଂପର୍କରେ ଯେଉଁଳି ସୁନ୍ଦର ଭାଷାରେ ବର୍ଣ୍ଣନା କରିଛନ୍ତି, ଆମର ଯେତେ ପ୍ରେମ କବି ଅଛନ୍ତି, କେହି ହେଲେ ତାଙ୍କୁ ଟପି ଯାଇ ପାରିବେ ନାହିଁ । ଶୃଙ୍ଗାର ଶତକରେ ପରୋକ୍ଷରେ କବି ପ୍ରତିପାଦିତ କରିଛନ୍ତି ଯେ ଜୀବନ ପାଇଁ ଶୃଙ୍ଗାର ରସ ଅପରିହାର୍ଯ୍ୟ ହେଲେ ସୁଦ୍ଧା ଶୃଙ୍ଗାର ରସଗ୍ରାହୀ ମନୁଷ୍ୟ ନୀତିବାନ ଓ ଶୃଙ୍ଖଳିତ ହେବା ବିଧେୟ ।

ଏହାର ପରବର୍ତ୍ତୀ ଅଧ୍ୟାୟ ଆହୁରି ଉଲ୍ଲେଖଯୋଗ୍ୟ । ମାନବ ଜୀବନରେ କିଛିଦିନ ପରେ କାମନା ଓ ବାସନାର ସମୟ ଅତିବାହିତ ହୋଇଯିବ । ତା' ପରେ ପ୍ରକୃତ ବୈରାଗ୍ୟ ସମୟ ଆସିବ । ସେ ନିଜେ କହିଛନ୍ତି; ସମୟ ତାଙ୍କର ଆସିଗଲାଣି । ନିଜ ସଂପର୍କରେ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି ଯେ ରଜା ଓ ସନ୍ନ୍ୟାସୀ ହେବା ଭିତରେ ସେ ସାତଥର ଏପାଖ ସେପାଖ ହୋଇଛନ୍ତି । ସନ୍ନ୍ୟାସୀ ହେବା ପାଇଁ ଯାଇଛନ୍ତି, କିଛିଦିନ ରହିଛନ୍ତି, ପୁଣି ଫେରି ଆସିଛନ୍ତି । ଏହିପରି ସାତଥର ଏପାଖ ସେପାଖ ହୋଇ ଶେଷକୁ ତାଙ୍କର ବୈରାଗ୍ୟ ଆସିଛି ଏବଂ ସେ କାହିଁକି ବୈରାଗ୍ୟ ଗ୍ରହଣ କରିଛନ୍ତି, ସେ ସଂପର୍କରେ ସୁନ୍ଦର ଗଳ୍ପଟିଏ ଅଛି ।

ତାଙ୍କୁ ଜଣେ ସନ୍ନ୍ୟାସୀ ଗୋଟିଏ ଫଳ ଦେଇଥିଲେ । ସେ ଫଳଟି ହେଉଛି ଅମରର ଫଳ । ଯିଏ ଖାଇବ ସେ ଅମର ହୋଇଯିବ । ସେ ତାଙ୍କର ରାଣୀଙ୍କୁ ସବୁଠାରୁ ଭଲ ପାଉଥିଲେ । ତେଣୁ ସେ ଫଳଟିକୁ ତାଙ୍କର ରାଣୀଙ୍କୁ ଖାଇବାକୁ ଦେଲେ । ରାଣୀ କିନ୍ତୁ ରାଜାଙ୍କୁ ଭଲପାଉ ନଥିଲେ ଘୋଡାଶାଳର ରକ୍ଷକକୁ ଭଲ ପାଉଥିଲେ । ରାଣୀ ସେ ଫଳଟିକୁ ଘୋଡାଶାଳର ରକ୍ଷକକୁ ନେଇ ଦେଲେ । ଘୋଡ଼ାଶାଳର ରକ୍ଷକ ଗୋଟିଏ ବେଶ୍ୟାକୁ ଭଲ ପାଉଥିଲେ । ସେ ଫଳଟିକୁ ବେଶ୍ୟାକୁ ଦେଲେ । ବେଶ୍ୟା ଭାବିଲା ରାଜା ନ ରହିଲେ ତା'ର ବୃତ୍ତି ଚାଲିଯିବ । ତେଣୁ, ବେଶ୍ୟା ଫଳଟିକୁ ନେଇ ରାଜାଙ୍କୁ ଉପହାର ଦେଲା । ଏମିତି ଅମର ଫଳଟି ପୁଣି ତାଙ୍କ ପାଖରେ ଯାଇ ପହଞ୍ଚିଲା । ଶେଷରେ ସେ ସ୍ଥିର କଲେ ଏ ସଂସାର କ୍ଷେତ୍ରରେ ରହି କିଛି ଲାଭ ନାହିଁ । ତେଣୁ, ସେ ବୈରାଗ୍ୟ ଗ୍ରହଣ କଲେ ।

ବୈରାଗ୍ୟ ଶତକରେ ସେ କହିଛନ୍ତି ; ସବୁଥିରେ ସଂସାରରେ ଭୟ ଅଛି । ଯେ କୌଣସି ଧନ ଅର୍ଜନ କରିବ, ସେଥିରେ ମଧ୍ୟ ଭୟ ରହିଛି । କାରଣ , ସେ ଧନକୁ କେହି ଅପହରଣ କରି ନେଇଯିବ । ବିଦ୍ୟା ଅର୍ଜନ କଲେ ପଣ୍ଡିତ ବ୍ୟକ୍ତିମାନଙ୍କ ପ୍ରତି ମନେ ମନେ ଭୟ ରହିବ । ଦେହ ଥିଲେ ଜରାର ଭୟ ଅଛି, ମୃତ୍ୟୁର ଭୟ ଅଛି; କିନ୍ତୁ "ବୈରାଗ୍ୟ ମେବାଭୟମ୍" ସମସ୍ତ ପାର୍ଥିବ ବସ୍ତୁକୁ ପରିତ୍ୟାଗ କରି ବୈରାଗ୍ୟ ଗ୍ରହଣ କଲେ ଭୟର ପ୍ରଶ୍ନ ଉଠୁ ନାହିଁ । ଯାହାକି ଅଭୟ । ଯେଉଁ ଅଭୟର କଥା ଗୀତାରେ କୁହାଯାଇଛି । ସମସ୍ତ ପ୍ରକାର ଶକ୍ତିର ସେନାପତି ଯଦି କେହିରହେ, ମନୁଷ୍ୟର ସେ ହେଉଛି ଅଭୟ । ଅଭୟ ହେଉଛି ମନୁଷ୍ୟର ସଦ୍‌ଗୁଣର ସେନାପତି । ତେଣୁ , ଅଭୟ ଆଚରଣ ସବୁଠାରୁ ଶ୍ରେଷ୍ଠ ପନ୍ଥା ।

ଚୀନ ପରିବ୍ରାଜକ ଇତ୍‌ସାଂ କବିଙ୍କ ସଂପର୍କରେ ବର୍ଣ୍ଣନା କରିଛନ୍ତି ଯେ ଭର୍ତ୍ତୃହରି ବୋଲି ଜଣେ କବି ଥିଲେ । ସେ ବ୍ୟାକରଣ ରଚନା କରିଥିଲେ । ତାଙ୍କର ୬୫୧ ଖ୍ରୀଷ୍ଟାବ୍ଦରେ ଦେହାନ୍ତ ହୋଇଥିଲା । ଅନ୍ୟକଥା ସେ ଉଲ୍ଲେଖ କରିନାହାଁନ୍ତି କିନ୍ତୁ ତାଙ୍କର ବର୍ଣ୍ଣନାରୁ ଜଣାଯାଏ ଯେ ସେ କବି ଭର୍ତ୍ତୃହରିଙ୍କ ବ୍ୟତୀତ ଅନ୍ୟ କେହି ନୁହଁନ୍ତି ।

ଭର୍ତ୍ତୃହରିଙ୍କୁ କେହି କେହି ବୌଦ୍ଧ ବୋଲି କହନ୍ତି କିନ୍ତୁ ସେ ବୌଦ୍ଧ ନଥିଲେ । କାରଣ ବୌଦ୍ଧମାନେ ଈଶ୍ୱରଙ୍କ ବିଶ୍ୱାସ କରନ୍ତି ନାହିଁ । ତେଣୁ , କବିଥିଲେ ଏକେଶ୍ୱର ବାଦୀ । ତାଙ୍କୁ ବେଦାନ୍ତିକ ଶିବଭକ୍ତ ବୋଲି ମଧ୍ୟ କୁହାଯାଇ ପାରେ ।

ସଂସ୍କୃତ ଭାଷା ସମସ୍ତ ଭାଷାର ଆଦିଭାଷା । ସଂସ୍କୃତ ବ୍ୟତିରେକେ କୌଣସି ଭାରତୀୟ ଭାଷାର ସୃଷ୍ଟି ସମ୍ଭବ ନୁହେଁ । ସଂସ୍କୃତକୁ ଛାଡ଼ି ଦେଇ କୌଣସି ଭାରତୀୟ ଭାଷାର ଅଭିବୃଦ୍ଧି ହେବ ନାହିଁ । ଆମେ ଯଦି ଓଡ଼ିଆ ଭାଷାର ଅଭିବୃଦ୍ଧି ଘଟାଇବା ତା' ହେଲେ ସଂସ୍କୃତ ଭାଷାର ଅଧ୍ୟୟନ ଏକାନ୍ତ ଆବଶ୍ୟକ ।

—

( ତା ୧୬।୧୦।୧୯୮୪ ରିଖରେ ଭୁବନେଶ୍ୱର ସୂଚନା ଭବନରେ ଆୟୋଜିତ ଭର୍ତ୍ତୃହରି ଶତକତ୍ରୟ ଉଦ୍‌ଘାଟନ ଅଭିଭାଷଣରୁ ) ।

' ଉନ୍ନତିର ସବୁ ପ୍ରାକୃତିକ ଉପାଦାନ ଓଡ଼ିଶାରେ ଭରପୂର ହୋଇ ରହିଛି—ବିରାଟ ଖଣିଜ ଓ ଅରଣ୍ୟ ସଂପଦ, ବିସ୍ତୀର୍ଣ୍ଣ ସମତଳ ଭୂମି, ସୁଦୀର୍ଘ ସମୁଦ୍ର ଉପକୂଳ ଓ ବିପୁଳ ନଦୀ ଓ ହ୍ରଦ ସଂପଦ । ଏହାର ପ୍ରାକୃତିକ ସଂପଦ ମଧ୍ୟ ଐଶ୍ୱର୍ଯ୍ୟମୟ ।

ଜାନକୀ ବଲ୍ଲଭ ପଟ୍ଟନାୟକ

# ସାମାଜିକ ଜଙ୍ଗଲ ଓ ଗ୍ରାମ ଉନ୍ନୟନ

ଶ୍ରୀ ଜ୍ଞାନରଞ୍ଜନ ମହାନ୍ତି

ସମଗ୍ର ଭାରତରେ ଏବେ ସାମାଜିକ ଜଙ୍ଗଲ ଓ କୃଷି-ଭିତ୍ତିକ ଜଙ୍ଗଲ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଛି । ଓଡ଼ିଶାରେ ମଧ୍ୟ ଏ ଦିଗରେ ପ୍ରୟତ୍ନ କରାଯାଉଛି । ସାମାଜିକ ଜଙ୍ଗଲ ଓ କୃଷିଭିତ୍ତିକ ଜଙ୍ଗଲ ( Farm Forestry ) ସୃଷ୍ଟିଦ୍ୱାରା ଆମ ଗ୍ରାମାଞ୍ଚଳର ଅର୍ଥନୈତିକ ଉନ୍ନତିରେ ବଡ଼ ଧରଣ ପରିବର୍ତ୍ତନ ଆଣିହେବ । ଲୋକମାନଙ୍କର ଦୈନନ୍ଦିନ ଜୀବନଧାରଣ ପାଇଁ ଏହି ବନ ଆନ୍ଦୋଳନ ସହାୟକ ହେବା ସଙ୍ଗେ ସଙ୍ଗେ କର୍ମନିଯୁକ୍ତିର ପରିସର ବୃଦ୍ଧି ଦିଗରେ ସାହାଯ୍ୟ କରିବ । ବର୍ତ୍ତମାନ ଆମେ ଯେଉଁ ବନନୀତି କାର୍ଯ୍ୟକାରୀ କରୁଛେ ୧୯୫୨ ମସିହାର ସରକାରୀ ନିଷ୍ପତ୍ତି ତାହାର ପୃଷ୍ଠଭୂମି । ବନ ନୀତିର ପୁନର୍-ମୂଲ୍ୟାୟନ କରି ସଂଶୋଧିତ ନିଷ୍ପତ୍ତି ଘୋଷଣା କରିବାର ଏବେ ସମୟ ଆସିଛି । ଆମ ଗାଁ ଗହଳର ଜୀବନଧାରଣ ମୁଖ୍ୟତଃ କୃଷିକୁ ଆଶ୍ରା କରେ । ଏଣୁ କୃଷି-ଭିତ୍ତିକ ଜଙ୍ଗଲ ସୃଷ୍ଟି କରି କୃଷି ଓ କୃଷକର ଉନ୍ନତି ସାଧନ କରିପାରିଲେ ଆମର ବହୁ ମୂଲ୍ୟବାନ ଜଙ୍ଗଲସଂପଦର ସୁରକ୍ଷା ହୋଇପାରିବ । ଗ୍ରାମାଞ୍ଚଳ ଉନ୍ନୟନ ପାଇଁ ଏବେ ଗ୍ରାମପଞ୍ଚାୟତ ଓ ପଞ୍ଚାୟତ-ସମିତିମାନେ ତତ୍ପର ହୋଇଛନ୍ତି । ବହୁ ରାଜ୍ୟରେ ସାମାଜିକ ଓ କୃଷି-ଭିତ୍ତିକ ଜଙ୍ଗଲ ସୃଷ୍ଟିପାଇଁ ବନବିଭାଗ ସହିତ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଦାୟିତ୍ୱ ଦିଆଯାଉଛି । ଏହା ନିଶ୍ଚିତଭାବେ ଗାଁ ସହରର ଲୋକପ୍ରତିନିଧିମାନଙ୍କ ମଧ୍ୟରେ ଜଙ୍ଗଲସଂପଦ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ବଢ଼େଇବ । ବନୀକରଣ ଏବଂ ହିଂସ୍ରଜନ୍ତୁଙ୍କ ସଂରକ୍ଷଣ ସହିତ ଆଲୋଚ୍ୟ ବନଉନ୍ନୟନ କାର୍ଯ୍ୟକ୍ରମ ପାରିବେଶିକ ସମସ୍ୟାଗୁଡ଼ିକର ସମାଧାନ କରିବାରେ ସକ୍ରିୟ ଭୂମିକା ନେବ ।

ବ୍ରିଟିଶ ସରକାର ପ୍ରଥମେ ୧୮୫୫ ଓ ୧୮୮୪ ମସିହାରେ ଭାରତର ଜଙ୍ଗଲ ସଂପଦର ସୁରକ୍ଷାପାଇଁ ବିଧିବଦ୍ଧ ନୀତି ପ୍ରଣୟନ କରିଥିଲେ । ପୁରାଣ ପୁରସ୍ତ ବନସଂପଦର ସ୍ୱର୍ଗୀୟ ସୁଷମା ସଂପର୍କରେ ଲେଖାମାନ ରହିଛି । ପୁରାତନ ହିନ୍ଦୁସଂସ୍କୃତିର ମୂଳ-ସୂତ୍ର ଏଇ ଅରଣ୍ୟ । ଅଶୋକ, ଆକବର, ଔରଙ୍ଗଜେବ ଆଦି ସମ୍ରାଟମାନେ ପଥପାର୍ଶ୍ୱ ବୃକ୍ଷରୋପଣକୁ ଉତ୍ସାହିତ କରିଆସିଛନ୍ତି ।

ସ୍ୱାଧୀନତା ପରେ ସ୍ୱାଧୀନ-ଭାରତ ସରକାର ବନସଂପଦ ଓ ସୁଷମାର ସଂରକ୍ଷଣାବେକ୍ଷଣ ପାଇଁ ପଞ୍ଚବାର୍ଷିକ ଯୋଜନାରେ ବନୀକରଣ ପାଇଁ ନିର୍ଦ୍ଦିଷ୍ଟ ଯୋଜନାମାନ ଅନ୍ତର୍ଭୁକ୍ତ କରିଥିଲେ । ୧୯୫୨ ରେ ଯେଉଁ ବନ-ନୀତି ପ୍ରଣୟନ କରାଯାଇଥିଲା, ସେଥିରେ ସମଗ୍ରଭାରତର ଶତକଡ଼ା ୩୩ ଭାଗ ଭୂମିକୁ ଜଙ୍ଗଲ ସଂପଦର ଅନ୍ତର୍ଭୁକ୍ତ କରିବାପାଇଁ ସୁପାରିଶ କରାଯାଇଥିଲା । ଏହି କାରଣରୁ ୧୯୫୦ ମସିହା ପରଠାରୁ କୃଷିଭିତ୍ତିକ ବନ ସୃଷ୍ଟି ଉପରେ ଗୁରୁତ୍ୱ ଦିଆହୋଇ ଆସୁଛି । ଭାରତର ଜାତୀୟ କୃଷି ଆୟୋଗ ( NCA ) ବହୁ ଅନୁଧ୍ୟାନପରେ ୧୯୭୬ ମସିହାରୁ ଜଙ୍ଗଲର ସୁରକ୍ଷା ପାଇଁ ଦୁଇଟି ମୁଖ୍ୟକାରଣ ଦର୍ଶାଇଥିଲେ । ପ୍ରଥମତଃ ସାମାଜିକ ଜଙ୍ଗଲ କରିଆରେ ଜାଳେଣିକାଠ ଓ ଅନ୍ୟାନ୍ୟ ଛୋଟ ଛୋଟ ଜଙ୍ଗଲଜାତ ଦ୍ରବ୍ୟ ଗାଁର ଲୋକମାନଙ୍କୁ ଯୋଗାଇ ଦିଆ-ଯାଇପାରିବ ଏବଂ ଦ୍ୱିତୀୟତଃ ଘରତିଆରି, କୃଷିସରଞ୍ଜାମ ଓ ଶିଳ୍ପପାଇଁ ଉତ୍ପାଦନଭିତ୍ତିକ ଜଙ୍ଗଲ (Production Forestry) ମାଧ୍ୟମରେ କାଠ-ଚାହିଦା ପୂରଣ କରାଯାଇ ପାରିବ । ସାମାଜିକ ଜଙ୍ଗଲ କାର୍ଯ୍ୟକ୍ରମ ପ୍ରତି ଏବେ ଯେତେ ପ୍ରାଧାନ୍ୟ ଦିଆଯାଉଛି ପୂର୍ବରୁ ଏହାପ୍ରତି କାହାର ଏତେ ଦୃଷ୍ଟି ନ ଥିଲା । ଜନସାଧାରଣଙ୍କ ପାଖରେ ସରକାର ଦ୍ୱାରା ପହଞ୍ଚେଇବା ପାଇଁ ସଂପ୍ରତି ଏହି କାର୍ଯ୍ୟକ୍ରମ ହିଁ ଠିକଣା ପଦକ୍ଷେପ ବୋଲି ବିଚାର କରାଯାଉଛି । ଭାରତର ବିଭିନ୍ନ ପ୍ରଦେଶରେ ପ୍ରାୟ ଏହି ଯୋଜନାରେ ଯଦିଓ ଭିନ୍ନତା ରହିଛି, ତଥାପି ଏହାର ମୌଳିକ ନୀତି ସବୁଠି ସମାନ । ଜଙ୍ଗଲ ବିଭାଗ ତରଫରୁ ରାସ୍ତା, ରେଳଲାଇନ ଓ କେନାଲପାର୍ଶ୍ୱରେ ବୃକ୍ଷରୋପଣ, କ୍ଷୟପ୍ରାପ୍ତ ଜଙ୍ଗଲଭୂମିର ପୁନରୁତ୍ଥାନ, ବେସରକାରୀ ଜମିରେ ବ୍ୟକ୍ତିଗତ ଉଦ୍ୟମରେ ବା ସ୍ୱେଚ୍ଛାସେବୀ ଅନୁଷ୍ଠାନ ଉଦ୍ୟମରେ କୃଷିଭିତ୍ତିକ ବନ ସୃଷ୍ଟି ଇତ୍ୟାଦିକୁ ମୂଳନୀତି ବୋଲି ଆଖ୍ୟା ଦିଆଯାଉଛି ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ଅର୍ଥପୂର୍ଣ୍ଣ ଭାବେ ଏହି କାର୍ଯ୍ୟକ୍ରମର ରୂପାୟନ ପାଇଁ ସରକାରୀସ୍ତରରେ ପ୍ରଚେଷ୍ଟା କରାଯାଇଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ପାରିବେଶିକ ଓ ଶିଳ୍ପଭିତ୍ତିକ ଜଙ୍ଗଲ କାର୍ଯ୍ୟକ୍ରମ ଅଧିକ ଶୃଙ୍ଖଳିତ ଭାବେ କାର୍ଯ୍ୟକାରୀ କରିବା ପାଇଁ ଯୋଜନାକମିଶନ ନୀତିଗତଭାବେ ନିଷ୍ପତ୍ତି ନେଇଥିଲେ । ସମାଜର ଅବହେଳିତ ଓ ଗରିବଶ୍ରେଣୀ ଲୋକମାନଙ୍କ ଉନ୍ନତିକଳ୍ପେ ଏବଂ ଜାଳେଣିଚାହିଦା ପୂରଣ କରିବା ପାଇଁ ଏହି ଯୋଜନାରେ ଗୁରୁତ୍ୱଆରୋପ କରାଯାଇଥିଲା । ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ମଧ୍ୟ ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ବ୍ୟାପକ ପ୍ରସ୍ତୁତି ଚାଲିଛି । ଏବେ ଯେପରି ପରିବେଶ ଦୂଷିତ ହେଉଛି କର୍କଟ ରୋଗ, ହୃଦରୋଗ ବ୍ୟାପୁଛି, ମୃତ୍ତିକାକ୍ଷୟ ହେଉଛି, ପାଣି ଓ ପବନ ସବୁଠି ଦୁର୍ଗନ୍ଧ—ଏଥିରୁ ଉଦ୍ଧାର ପାଇବା ପାଇଁ ଲୋକେ ବୃକ୍ଷରୋପଣ,ବନୀକରଣକୁ ଗୁରୁତ୍ୱ ଉପଲବ୍ଧି କରୁଛନ୍ତି । ମୋଟାମୋଟି ଭାବେ କହିବାକୁ ଗଲେ, ସାମାଜିକ ଜଙ୍ଗଲ ସୃଷ୍ଟି ସପକ୍ଷରେ ଜନମତର ସମର୍ଥନ ରହିଛି ବୋଲି ଧରିନିଆଯାଇପାରେ ।

ସାମାଜିକ ଜଙ୍ଗଲ ପାଇଁ ଭାରତରେ ଯେଉଁ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ସେଥିପାଇଁ ବିଶ୍ୱବ୍ୟାଙ୍କ, ସୁଇଡେନ ସରକାର, ଯୁକ୍ତରାଷ୍ଟ୍ର ସରକାର ଇତ୍ୟାଦିରୁ ଆର୍ଥିକ ଓ ବୈଷୟିକ ସହାୟତା ମିଳୁଛି । ଓଡ଼ିଶାରେ ଏହି କାର୍ଯ୍ୟକ୍ରମ ପାଇଁ ସୁଇଡେନର ସାହାଯ୍ୟ ଓ ସହଯୋଗ ପ୍ରଶଂସନୀୟ । ଏତଦ୍‌ବ୍ୟତୀତ ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗବେଷଣାସଂସ୍ଥା ଓ ପାରିବେଶିକ ସଂରକ୍ଷଣ ଅନୁଷ୍ଠାନମାନେ ସାମାଜିକ ଜଙ୍ଗଲ ସୃଷ୍ଟିପାଇଁ ନିଷ୍ଠାରସହ କାର୍ଯ୍ୟ କରୁଛନ୍ତି ।

ଗ୍ରାମାଞ୍ଚଳ ଉନ୍ନୟନ ଦାୟିତ୍ୱରେ ଥିବା ବ୍ଲକସ୍ତରୀୟ ସଂପ୍ରସାରଣ ଅଧିକାରୀମାନେ ଗାଁ ଗହଳରେ ସାମାଜିକ ଜଙ୍ଗଲ ସୃଷ୍ଟିପାଇଁ ଲୋକମାନଙ୍କୁ ଉତ୍ସାହିତ କରିବା ଦରକାର । କାରଣ ସରକାର ଗଛଲଗେଇ ପାଣିଦେଇ ତା'ର ରକ୍ଷଣାବେକ୍ଷଣ ଦାୟିତ୍ୱ ବୁଝିବା କଷ୍ଟକର ବ୍ୟାପାର । ଗଛଟିଏ ଲଗେଇଦେଲେ ହେବନାହିଁ । ତା'ର ଯତ୍ନ ନେଇ ତାକୁ ବଞ୍ଚେଇବା ଆହୁରି ବେଶୀ ଗୁରୁତ୍ୱକଥା । ଗଛ ବଢେଇବାରେ ସ୍ଥାନୀୟ ଲୋକେ, ସ୍ଥାନୀୟ ନେତୃତ୍ୱ ଆଗେଇ ଆସିବା ଉଚିତ । ଜନସାଧାରଣ ଏହାକୁ ନିଜ କାର୍ଯ୍ୟକ୍ରମ ଭାବି ଗଛର ଯତ୍ନ ନେବା ବିଧେୟ । ସଂପ୍ରସାରଣ ଅଧିକାରୀମାନେ ଜନସାଧାରଣଙ୍କୁ ଏ ସାମାଜିକ ଜଙ୍ଗଲର ସୁରକ୍ଷା ସଂପର୍କରେ ତାଲିମ ଦେବା ସରକାରଙ୍କ ଦାୟିତ୍ୱ । ପ୍ରାଥମିକ ସ୍କୁଲର ଶିକ୍ଷକମାନେ, ବ୍ଲକକର୍ମଚାରୀମାନେ, ଗୋଷ୍ଠୀଉନ୍ନୟନ ସହ ସଂପୃକ୍ତ ଅଫିସରମାନେ, ସ୍ଥାନୀୟ ଲୋକମାନଙ୍କୁ କୃଷିଭିତ୍ତିକ ଜଙ୍ଗଲର ଉପକାରିତା ସଂପର୍କରେ ସଚେତନ କରିବା ଦରକାର । ଲୋକମାନଙ୍କ ଭିତରୁ କର୍ମଠ ଯୁବକମାନଙ୍କୁ ବାଛି ସେମାନଙ୍କୁ ଏହି କାର୍ଯ୍ୟକ୍ରମରେ ଅଂଶଗ୍ରହଣପାଇଁ ସୁଯୋଗ ଦେଲେ ସେମାନେ ଉତ୍ସାହିତ ହେବେ । ଗାଁ ଗହଳରେ 'ନର୍ସରୀ' ମାନ ସ୍ଥାପନ କରାଯାଇ ପର୍ଯ୍ୟାପ୍ତ ଚାରାଗଛ ଉପୁଜେଇବା ଆବଶ୍ୟକ ।

ବନବୃଦ୍ଧି ଦିଗରେ ଆନୁଷ୍ଠାନିକ ଅର୍ଥ ( Institutional Finance) ବ୍ୟବସ୍ଥା କରିବା ପାଇଁ ରାଜ୍ୟମାନଙ୍କରେ ବନଉନ୍ନୟନ ନିଗମମାନ ପ୍ରତିଷ୍ଠା କରାଯାଇଛି । ଏହି ନିଗମ ଜରିଆରେ ବନଭୂମିର ଶୋଭାବୃଦ୍ଧି, ନୂଆବନ ସୃଷ୍ଟି, ପୁରୁଣା ବନଭୂମିର ସୁରକ୍ଷା, ଅଗମ୍ୟ ଅଞ୍ଚଳର ଉନ୍ନତି ଇତ୍ୟାଦି କାର୍ଯ୍ୟକ୍ରମମାନ ହାତକୁ ନିଆଯାଇଛି । କୃଷି ଓ ଗ୍ରାମ୍ୟଉନ୍ନୟନ ଜାତୀୟ ବ୍ୟାଙ୍କ (NABARD) ଏ କ୍ଷେତ୍ରରେ ଅଗ୍ରଗାମୀ ଭୂମିକା ନେବାର କଥା । ବ୍ୟକ୍ତିବିଶେଷ ଓ ଅନୁଷ୍ଠାନମାନଙ୍କୁ ମଧ୍ୟ ସାମାଜିକଜଙ୍ଗଲ ସୃଷ୍ଟିପାଇଁ ବ୍ୟାଙ୍କମାନେ ଆର୍ଥିକ ସହାୟତା ଦେବା ଆବଶ୍ୟକ ।

ସାମାଜିକ ଜଙ୍ଗଲ ବିକାଶ କାର୍ଯ୍ୟରେ ନାରୀମାନଙ୍କର ସ୍ୱତନ୍ତ୍ର ଭୂମିକା ରହିଛି । ମଧ୍ୟପ୍ରଦେଶ ଓ ହିମାଚଳ ପ୍ରଦେଶରେ ନାରୀମାନେ ଏ ଦିଗରେ ଉତ୍ସାହ ଦେଖାଉଛନ୍ତି ।

ସାମାଜିକ ଜଙ୍ଗଲ ବିକାଶପଥରେ ଅନେକ ଅସୁବିଧା ଦେଖାଦେଉଛି । ସାମାଜିକ ଜଙ୍ଗଲ ଦାୟିତ୍ୱରେ ଥିବା ଜଙ୍ଗଲ ବିଭାଗୀୟ ଅଫିସର ଓ କର୍ମଚାରୀମାନେ କିଭଳିଭାବେ ସେମାନଙ୍କ ଦାୟିତ୍ୱ ସଂପାଦନ କରିବେ ଜନସାଧାରଣଙ୍କ ସହ ସେମାନେ କିଭଳି ସଂପର୍କ ରକ୍ଷା କରି କାର୍ଯ୍ୟକ୍ରମକୁ ଆଗେଇନେବେ ତାହା ଅବଶ୍ୟ ଅନୁଧ୍ୟାନ କରାଯିବ ।

କେନ୍ଦ୍ରସରକାର ଏଥିପାଇଁ ଏକ କେନ୍ଦ୍ରୀୟ ସଂପ୍ରସାରଣ ଇଉନିଟ ଖୋଲିଛନ୍ତି । ସାମାଜିକ ଜଙ୍ଗଲର ବିକାଶପାଇଁ ଆଉ କି କି ପଦକ୍ଷେପ ନିଆଗଲେ ଏହାକୁ ଅଧିକ ଲୋକପ୍ରିୟ କରିହେବ, ସେ ସଂପର୍କରେ ଗବେଷଣାର ଆବଶ୍ୟକତା ରହିଛି । ଏହାର ଆନୁଷଙ୍ଗିକ ବିଷୟଗୁଡ଼ିକର ପର୍ଯ୍ୟାଲୋଚନା ପାଇଁ ଭାରତରେ ପାଞ୍ଚଟି ଆଞ୍ଚଳିକ-ବିଜ୍ଞାନ-କେନ୍ଦ୍ର ଖୋଲାଯିବାର ପ୍ରୋଗ୍ରାମ ରହିଛି । ଖାଦ୍ୟ ଓ କୃଷି ସଂସ୍ଥା, ଗ୍ରାମ୍ୟଉନ୍ନୟନ ପାଇଁ ଆନ୍ତର୍ଜାତିକ ବ୍ୟାଙ୍କ ଆଦି ବିଶ୍ୱସଂସ୍ଥା ତରଫରୁ ଘୋଷଣା କରାଯାଉଥିବା ଦିଗ୍‌ଦର୍ଶକ-ନୀତି ( guidelines ) ଅନୁଯାୟୀ କାର୍ଯ୍ୟକ୍ରମଗୁଡ଼ିକର ମୂଲ୍ୟାୟନ ଓ କାର୍ଯ୍ୟକାରୀ ଢାଞ୍ଚା ପ୍ରସ୍ତୁତହେବା ଦରକାର । ବନ-ଶିକ୍ଷା ଗବେଷଣା ଓ ସଂପ୍ରସାରଣ ବ୍ୟବସ୍ଥା ପ୍ରତି ସରକାରୀ ପ୍ରୋତ୍ସାହନ ନିଷ୍ଠାରସହ ଆରମ୍ଭ କରାଗଲେ ସାମାଜିକ ଜଙ୍ଗଲ, କୃଷିଭିତ୍ତିକ ଜଙ୍ଗଲ, ସଂରକ୍ଷଣ ଜଙ୍ଗଲ, ଉତ୍ପାଦନଭିତ୍ତିକ ଜଙ୍ଗଲ ଆଦି ସୃଷ୍ଟି ସଙ୍ଗେ ସଙ୍ଗେ ପରିବେଶର ସାମଗ୍ରିକ ଉନ୍ନତି ହୋଇପାରିବ ।

ଭାରତରେ ଯୋଜନାର ଅର୍ଥହେଲା ଦାରିଦ୍ର୍ୟର ବିଲୋପ ସହିତ ଆତ୍ମନିର୍ଭରଶୀଳତାର ବିକାଶ । ଯୋଜନାର ଏହି ଅଭିମୁଖ୍ୟକୁ ଚରିତାର୍ଥ କରିବାପାଇଁ ବନ-ସଂରକ୍ଷଣ ଓ ସାମାଜିକ ଜଙ୍ଗଲ ସଂପଦର ବୃଦ୍ଧି ଆବଶ୍ୟକ । ବନସଂପଦର ଅଭିବୃଦ୍ଧି ଘଟିଲେ ଏହା ଗ୍ରାମାଞ୍ଚଳରେ ବିଶେଷକରି ଅନୁନ୍ନତ ସଂପ୍ରଦାୟର ଅର୍ଥନୈତିକ ଅଭିବୃଦ୍ଧି ହେବା ସଙ୍ଗେ ସଙ୍ଗେ ଜଙ୍ଗଲକୁ ଆଶ୍ରାକରି ବଞ୍ଚିପାରିବାର ସୁଯୋଗ ପ୍ରଶସ୍ତ ହେବ ।

ସାମାଜିକ ଜଙ୍ଗଲ ପରି ଏକ ସାମାଜିକ କାର୍ଯ୍ୟକ୍ରମର ସଫଳତା କେତେ, ତାହା କଳନାକରିବା ସହଜ ନୁହେଁ । କାରଣ ଅର୍ଥନୀତିକ ମାନଦଣ୍ଡର ଅଭିବୃଦ୍ଧି ଘଟାଇ ସାମାଜିକ ସ୍ତରରେ ଗ୍ରାମ୍ୟଜୀବନକୁ ସରସସୁନ୍ଦର କରିବା ଦିଗରେ ଏହାର ସୁଦୂରପ୍ରସାରୀ ଭୂମିକା ରହିଛି । ବିକାଶଶୀଳ ରାଷ୍ଟ୍ରରେ ପରିବେଶକୁ ଉନ୍ନତ କରି ତା'ରି ମାଧ୍ୟମରେ ଖାଦ୍ୟ, ବସ୍ତ୍ର ଓ ବାସଗୃହ ସମସ୍ୟାର ସମାଧାନ କରିବା ରାଷ୍ଟ୍ରପକ୍ଷରେ ସରଳପ୍ରଣାଳୀ ନୁହେଁ । ଜାତୀୟ ଆୟବୃଦ୍ଧି ଦିଗରେ ଆମକୁ ଅହରହ ସଂଗ୍ରାମ କରିବାକୁ ହେବ । ପ୍ରକୃତିକୁ ଧ୍ୱଂସ ନ କରି ତା'ର ସ୍ନେହ ସହାଗରେ ଆମକୁ ବଢିବାକୁ ହେବ ।

ପ୍ରକୃତିକୁ ଆମେ ଯତ୍ନର ସହ ବଢେଇଲେ, ସେ ଆମକୁ ସ୍ୱଚ୍ଛ, ସୁନ୍ଦର ଜୀବନ ଦେଇପାରିବ ।

ରାଜନୀତି ବିଜ୍ଞାନ ବିଭାଗ,
ମହର୍ଷି କଲେଜ ଅଫ୍ ନେଚୁରାଲ ଲ,
ଶହୀଦନଗର, ଭୁବନେଶ୍ୱର–୭

# ଦାଦନ

ଡ଼ଃ ଦେବେନ୍ଦ୍ର ନାଥ ମାନସିଂହ

ରାମଚେନା ବୟସ ସୋଳିଏ । ଟାଣ ଦେହ । ପୁରୀ ଜିଲ୍ଲାର ଚିଲିକା କୂଳର ଏକ ପଲ୍ଲୀ ଗାଁରେ ଘର । ସବୁ ବର୍ଷ ମରୁଡ଼ି ତା'ର ସାଥୀ । କେବେ କେମିତି ଉଚାଣ ବର୍ଷା ହେଲେ ଚିଲିକାର ବଢ଼ିପାଣି ଧାନ୍ ଫସଲ ସବୁ ନଷ୍ଟ କରିଦିଏ । ଗାଁ ପାଖରେ ସହର ବଜାର ନାହିଁ କେଉଁଠି କାମ ଦାମ କରିବା ପାଇଁ । ପ୍ରତିବର୍ଷ ତାଙ୍କ ଗାଁର ପଡ଼ୋଶୀ ଦାଦା, କକା ସାଙ୍ଗରେ ଦାଦନ ଖଟିବାକୁ ବୁଲିଯାଏ । ଛଅମାସ ସୁଦୂର ଆସାମର ଗୁଆହାଟି, ଘଇନପାଣି, ଅବା କାର୍ଣ୍ଣିକନି, କାଶ୍ମୀର "ସାଗର ହାଇଡେଲ ପ୍ରୋଜେକ୍ଟ", ପଞ୍ଜାବର ବିଭିନ୍ନ ଅଞ୍ଚଳରେ ଗଢ଼ି ଉଠୁଥିବା ନୂଆ ନୂଆ ଜଳ ବିଦ୍ୟୁତ ପ୍ରକଳ୍ପରେ କାମ କରେ ।

ଗାଁ ପାଖର ଦାଦନ ଲେବର କଂଟ୍ରାକ୍ଟର ହରି ସୁବୁଦ୍ଧି । ହରି ସର୍ଦ୍ଦାର କହିଲେ ମୁଲକଯାକ ଡାକରା । ହରି ସର୍ଦ୍ଦାର ପାଖରେ ରାମର ଦଦା ଜଣେ ଖାତାଦାର । ସିଏ ପ୍ରତିଶ ପଚାଶ ଜଣ ଲୋକଙ୍କୁ ଗୋଟିଏ ଖାତାରେ ନିଏ । ସର୍ଦ୍ଦାରଠାରୁ ପ୍ରତି ଦାଦନ ଶ୍ରମିକ ପିଛା ନବେ ଟଙ୍କା କରି ତିନିମାସର ଅଗ୍ରୀମ ମଜୁରୀ ଆଣି ପଇଠ କରେ । ଶ୍ରମିକମାନଙ୍କଠାରୁ ଚୁକ୍ତିନାମା ଲେଖାଇନିଏ । ସେମାନେ ବିଦେଶ ଯାଇ ଛଅମାସ କାମ କରିବେ । ଯିବାଆସିବା ଯାତାୟତ ଖର୍ଚ୍ଚ, ସାଇଟରେ ଖାଇବା ରହିବା ବ୍ୟବସ୍ଥା ସର୍ଦ୍ଦାର ଦିଏ । ଛଅମାସ ଶେଷ ହେବା ଆଗରୁ କୌଣସି କାରଣରୁ କେହି ବୁଲିଆସିଲେ ଅଗ୍ରୀମ ଟଙ୍କା ଫେରସ୍ତ ଦେବାକୁ ପଡ଼େ । ତା'ପରେ କଡ଼ା ଶାସ୍ତି ।

ଖାତାଦାର ପ୍ରତି ଲୋକ ପିଛା ମାସକୁ ଦଶ ପନ୍ଦର ଟଙ୍କା ପାଏ । ସିଏ ହେଲା ଗୋଠ ଜଗୁଆଳ । ସକାଳ ଛଅଟାରେ ସବୁ ଶ୍ରମିକଙ୍କୁ ଉଠେଇ କାମକୁ ଯିବା ପାଇଁ ପ୍ରସ୍ତୁତ କରାଏ । ପଖାଳଭାତ ଏବଂ ବାସୀ ତରକାରୀ ଖାଇଦେଇ ସମସ୍ତେ କାମକୁ ଚାଲିବେ । ଯିଏ ଦେହ ଖରାପ ଅଛି ବୋଲି କହିଲା ତା'ଉପରେ ଚାଲିଲା ମାଡ଼ ।

ଆବେ ! ଏଠିକୁ ଆସିଛୁ କ'ଣ ସଉକୁନି କରିବାକୁ ! ଏ ଶୀତଦ ସମ୍ଭାଳି ପାରୁନୁ ଆସିଥିଲୁ କ'ଣ ପାଇଁ ? ଗେଲବସର ପୁଅତ ମାଆ କୋଳରେ ଶୋଇଥାନ୍ତୁ, ଟଗ ଟଙ୍ଗ ହୋଇ ଘରୁ ବାହାରି ପଡ଼ିଥିଲୁ କାହିଁକି ? ଆଡଭାନ୍ସ ନେଇବେଳେ କ'ଣ ଜାଣିନଥିଲୁ ଏଠି ସକାଳୁ ସଞ୍ଜ ପର୍ଯ୍ୟନ୍ତ ଖଟିବାକୁ ପଡ଼ିବ ? ଟଙ୍କା ନେଲାବେଳକୁ ଆଉ, କାମ କଲାବେଳକୁ ଗଣ୍ଡି ଭାଙ୍ଗି ପଡ଼ୁଛି ?

ତା'ପରେ ଖାତାଦାରର ନିର୍ଦ୍ଦେଶରେ ଜଣେ ଗୁଣ୍ଡା ଶ୍ରେଣୀର ଶ୍ରମିକ ଯେକି କେବଳ ଖାଇପିଇ ରହିଥାଏ, ଅବୋଲକରା ଲୋକମାନଙ୍କୁ ସାବାଡ଼ କରିବାପାଇଁ ତା'ର କାମ ଦେଖାଇଦିଏ । ବିଧା ଗୋଇଠା, ମାଡ଼ ପରେ କାଠ ପାଳିଆରେ ମଧ୍ୟ ପ୍ରହାର ଚାଲେ, ଯେତେବେଳେ ସେ ଖାତାଦାରର ବୋଲ ମାନିବାର ସ୍ୱୀକୃତି ଦିଏ, ସେତେବେଳେ ତାକୁ ଛାଡ଼ିଦିଆଯାଏ ।

ରାମର ବାପା ତା'ର ପାରିବା ବୟସରୁ ଦାଦନ ଯାଉଥିଲା । ଦୁର୍ବଳ ଲୋକ । ପନ୍ଦର କୋଡ଼ିଏ ବର୍ଷ ଦାଦନ ଖଟି ଖଟି କେବଳ ଝିଅଟିଏ ବାହାଦେଲା । ସେଥିରେ ପୁଣି ସର୍ଦ୍ଦାର ଠାରୁ କରଜ ଆଣିଥିଲା ପାଞ୍ଚ ହଜାର । ସେତକ ମଧ୍ୟ ତା' ଜୀବନରେ ସୁଝି ପାରିଲା ନାହିଁ । ମଲାବେଳକୁ ଆଉ ହଜାରେ ଟଙ୍କା ବାକି ରହିଗଲା । ଘର ଖଣ୍ଡକ ସେମିତି ଭଙ୍ଗା, ଦଦରା । ଗାଁ ପୋଖରୀ ପାଖରେ ଦି' ପାଆ ଜମି, ସେଥିରୁ ଯାହା ଧାନ ଅମଳ ହୁଏ ସେତକ ମଧ୍ୟ ବର୍ଷକର ଖାଇବାକୁ ନିଅଣ୍ଟ । ବାପା ମରିବା ପରେ ରାମ ସର୍ଦ୍ଦାରକୁ ଯାଇ ଭେଟିଲା । ମା' ସାଙ୍ଗରେ ଥିଲା, କେତେ ନେହୁରା ହେଇ କହିଲା ।

ସର୍ଦ୍ଦାର ବାବୁ ! ତମ ଗୋଡ଼ ହାତ ଧରୁଛି । ପିଲାଟାକୁ ଟିକେ କାମରେ ନଗେଇଦିଅ । ବାପଟା ତମରି ପାଖରେ ଖଟି ଖଟି ଶୋଷ ହେଇ ମଲା । ତମରି ନିମକ ଖାଇଚି ବାବୁ ! ଏ ବାପଛିଆ ପିଲାଟିକୁ ଟିକେ କୁଳରେ ନଗେଇ ଦିଅ, କିଏ ଆଉ ତା'ର ଅଛି । କିଏ ଆଦର କରିବ । ଗାଁରେ ହେଉଡ଼ା ଟୋକାଙ୍କ ସାଙ୍ଗରେ ଖାଲି ବୁଲୁଛି ।

ସର୍ଦ୍ଦାର ବାବୁ ମଦ ଟଳ ଟଳ ଦେହକୁ ଟିକେ ସ୍ଥିର କରି ରାମ ଆଡ଼କୁ ଅନେଇଲେ । ତାକୁ ପାଖକୁ ଡାକିଲେ । ପିଠିରେ ହାତ ଆଉଁସି କହିଲେ ଠିକ ଅଛି, ଚୁପ୍ କର ପରଉ ! ନେହିଁ ! ଆରେ ! ତୋ ବୋପାକୁ ପୋଷିଥିଲି, ତତେ ବି ରଖିବି ! ଖରା, ବର୍ଷା ଶୀତ କାକର ସହି ପାରିବୁତ ?

ରାମ ମୁଣ୍ଡ ଚୁଙ୍ଗାରି ସମ୍ମତି ଜଣାଇଲା । ସର୍ଦ୍ଦାର ବାବୁ ଖୁସି ହେଇ ପୁଣି ଥରେ ରାମର ଗୋଟାକ ଦେହକୁ ହାତ ମାରି କହିଲେ, "ବାପସେ ବେଟା ଜ୍ୟାଦା ହେ" ହଉ ଏଇ କାର୍ତ୍ତିକ ପୂର୍ଣ୍ଣମୀ ବାସି କାଶ୍ମୀର ଯିବୁ, ଟନେଲ କାମ । କିନ୍ତୁ କାଫି ପଇସା ।

ବଡ଼ା ସାଙ୍ଗରେ ରହିବୁ । କାମ ଶିଖିଗଲେ ତୁ ବି ବଡ଼ା ଭଳି ଖାତାଦାର ବନିଯିବୁ । ବସି ବସି ହାତରେ ଟଙ୍କା ଗଣିବୁ । ମାଆ ସାଙ୍ଗରେ ରାମ ଖୁସି ହୋଇ ଫେରିଲା, ଯା'ହେଉ ଛୁଆଟି ବେକାର ହୋଇ ବସିଥିଲା । ସର୍ଦ୍ଦାର କଥା ଦେଇଛି କାମରେ ନଗେଇଦେବ ।

କାର୍ତ୍ତିକ ପୂର୍ଣ୍ଣମୀ ବାସୀ ସର୍ଦ୍ଦାର ଖାତାରେ ତିନିଶହ ଟଙ୍କା ଆଡଭାନସ ନେଇଛି ବୋଲି ଲେଖିଲା । ରେଳ ଷ୍ଟେସନରେ ମା'କୁ ଶହେଟଙ୍କା ଦେଲା । ଆଉ ଦୁଇଶହ ଟଙ୍କା ବାପାର କରଜ ବାବଦକୁ ସର୍ଦ୍ଦାରକୁ ପଇଠ କଲା । ଖାତାଦାର ପଚାଶ ଜଣ ଲୋକଙ୍କୁ ଅଡ଼ଭାନସ ଦେଇ ଟିପ ଦସ୍ତଖତ ରଖିଲା । ଆଉ ସାଦା କାଗଜରେ କିଛି ନଲେଖି ମଧ୍ୟ ସମସ୍ତଙ୍କଠାରୁ ଦୁଇଟି କାଗଜରେ ଟିପଚିହ୍ନ ଦସ୍ତଖତ କରିନେଲା । ସର୍ଦ୍ଦାର ପାଖରେ ସବୁ କାଗଜପତ୍ର ଦେଲା ।

ଗୋଟିଏ ସପ୍ତାହ ପରେ ପଚିଶ ଜଣ ଦାଦନ ଶ୍ରମିକ ପଠାଣକୋଟ ରେଳଷ୍ଟେସନରେ ଓହ୍ଲାଇଲେ । ସେଠାରୁ ବସ୍‌ରେ ତାଙ୍କୁ ନିକଟବର୍ତ୍ତୀ ଧ୍ୟାନଗଡ଼ର "ସାଲାଲ ହାଇଡେଲ୍ ପ୍ରୋଜେକଟ"ରେ ପହଞ୍ଚିଲେ ।

ନିର୍ମାଣ ନିଗମ ପ୍ରୋଜେକଟର ମୁଖ୍ୟ କଣ୍ଟ୍ରାକ୍‌ଟର । ପାଓ୍ୱାର ହାଉସ୍ ଟନେଲ କାର୍ଯ୍ୟ ଆରମ୍ଭ ଚାଲିଛି । ଭାରତର ବିଭିନ୍ନ ପ୍ରଦେଶରୁ ହଜାର ହଜାର ଦାଦନ ଶ୍ରମିକ ଆସି କାମ କରୁଛନ୍ତି । ଦିନରାତି କାମ ଚାଲିଛି ।

ଧାଡ଼ି ଧାଡ଼ି ଶ୍ରମିକ ବସ୍ତି । ଚାରି ପାଞ୍ଚ ଫୁଟ ଉଚ୍ଚର ଘର । ଟିଣ ଛପର ହୋଇଛି । ଘର ଭିତରେ ନଇଁକରି ଯିବାକୁ ପଡ଼େ । ଟିଣ ଅବା ଅଖା ଦ୍ୱାରା ଘର ସବୁ ପାର୍ଟିସନ ହୋଇଛି । ଗୋଟିଏ ଘରେ ଦଶ ପନ୍ଦର ଜଣ ରହୁଛନ୍ତି । ଚାଳିଶ ପଚାଶ ଜଣଙ୍କ ପାଇଁ ଗୋଟିଏ ମେସ୍ । ଦୁଇଜଣ ଶ୍ରମିକ ରାନ୍ଧିବାରେ ସାହାଯ୍ୟ କରୁଛନ୍ତି, ଆଉ ସବୁ କାମକୁ ଯାଉଛନ୍ତି ।

ସକାଳ ଛଅରୁ ଉଠି କାମକୁ ଯିବେ । ପୁଣି ସନ୍ଧ୍ୟା ଛଅରେ ଫେରିବେ । ଏଠି ଶ୍ରମ ଆଇନକୁ ଆଖି ବୁଜି ଦିଆଯାଏ । ମଝିରେ ଅଧଘଣ୍ଟାଏ ଛୁଟି ଖାଇବା ପାଇଁ । ଯାହାର ଦେହ ଖରାପ ହେଲା ସେ ଛୁଟିରେ ରହିଲା । ତା'ର ମଜୁରୀ ବନ୍ଦ । କଂପାନୀର ଡାକ୍ତରଖାନା ରହିଛି । କିନ୍ତୁ ଔଷଧ ଠିକ୍ ଭାବେ ମିଳେନାହିଁ । ରୋଗୀକୁ ବାହାରୁ ଔଷଧ କିଣିବାକୁ ପଡ଼େ । ସର୍ଦ୍ଦାର ପଇସା ନଦେଲେ ଔଷଧ ଖାଇବା ବନ୍ଦ । ପୁଣି ରୋଗଗ୍ରସ୍ତ ହୋଇ ବହୁଦିନ କାମକୁ ନଗଲେ ଗାଳିମାଡ଼ । ନିର୍ଯାତନା । କେହି ଯଦି ଦୁଃଖ କାହାଣୀ ନିଜର ଆତ୍ମୀୟ ସ୍ୱଜନଙ୍କୁ ଲୁଚେଇ ଲେଖିଲା ତେବେ ତା'ର ବିପଦ ଆସିଗଲା । ଆଉ ସେ ଚିଠି ଦେଇ ପାରିବ କି କି ତା'ର ପାଖକୁ କିଛି ଚିଠି ଆସିଲେବି ସିଏ ଆଉ ପାଇ ପାରିବ ନାହିଁ । ଖାତାଦାର ସର୍ଦ୍ଦାରର କଡ଼ା ହୁକୁମ ସମସ୍ତେ ମାନିବାକୁ ବାଧ୍ୟ । ଯିଏ ଅବାଧ୍ୟ ହେଲା ତା'ଉପରେ ପୋଷା ହୋଇଥିବା ଗୁଣ୍ଡାର ମାଡ଼ । ଝାଡ଼ା ପରିସ୍ରା କରାଇଦେବା କେହି ଯଦି ନିକଟରେ ଥିବା ଥାନାକୁ କିଛି ଗୁହାରୀ କରେ, ତେବେ ଥାନା ଅଫିସର ତାକୁ ଜେଲ ରଖେ । ସର୍ଦ୍ଦାରକୁ ଖବର ଦେଇ ପୁଣି ନାଲି ଆଖି ଦେଖାଇ ଆଟକ କରେ । ଶ୍ରମିକ ଉପରେ ନିର୍ଯାତନ[illegible] ବଢ଼ିଗଲେ । ମଣିଷ ଭଳି ବଞ୍ଚି ରହିବାର ଅଧିକାରକୁ ପରିବେ[illegible] ଚୁରମାର କରିଦିଏ । ଅସହାୟ ।

ରାମ ଦୁଇ ମାସ କାମ କଲା ପରେ ଅଶାନ୍ତି ଅନୁଭବ କରୁଛି[illegible] ସେ କେବେ ଜେଲଖାନା ଯାଇନି । କିନ୍ତୁ ଏଠି ଅନୁଭ[illegible] କରୁଛି, ସମସ୍ତେ ଯେପରି ଜେଲଖାନାର ଜଣେ ଜଣେ କଏଦି[illegible] କିଛି ପ୍ରତିବାଦ କରିବାର ନାହିଁ । ଯିଏ ଅବାଧ୍ୟ ହେଲା ତା[illegible] ଠିକ ବାଟକୁ ଆଣିବା ପାଇଁ ମଣିଷ ହାତରେ ବନ୍ଧୁକ ।

ମାଘ ମାସ । ଶୀତର ପ୍ରକୋପ ଲାଗି ରହିଛି । ରା[illegible] ସକାଳ ଛଅରୁ ଅନ୍ୟ ଶ୍ରମିକମାନଙ୍କ ସାଥୀରେ କାମକୁ ଯାଉଛି[illegible] ଦେହରେ ଖଣ୍ଡିଏ ଗେଞ୍ଜି । ସ୍ୱେଟରଟିଏ କିଣିବା ପାଇଁ ପଇ[illegible] ନାହିଁ । ସପ୍ତାହରେ ଥରେ ଅବା ଦୁଇଥର ଗାଧୋଇବା ପା[illegible] ସମୟ ମିଳେ । ନଦୀର ଜଳ ବରଫ ଭଳି ଥଣ୍ଡା, ତଥା[illegible] ସେଇ ପ୍ରବାହିତ ଜଳ ସ୍ରୋତରେ ସପ୍ତାହର ଆବର୍ଜନାକୁ ଧୋ[illegible] ଦଆଯାଏ ।

ରାମ ପ୍ରୋଜେକଟ ସାଇଟ୍‌ରେ କାମ କରୁଥିବା ବେ[illegible] ହଠାତ ଦିନେ ଏକ ଦୁର୍ଘଟଣା ଘଟିଲା । ଗୋଟିଏ ବ[illegible] ପଥରକୁ କେତେ ଜଣ ଶ୍ରମିକ ଟେକୁଥିବା ବେଳେ ସେ ପଥ[illegible] ଗଡ଼ିଆସି ରାମର ବାମ ଗୋଡ଼କୁ ଚାପି ଦେଲା । ହାଡ଼ ଭଙ୍ଗ[illegible] ହେଲା । ପ୍ଲାଷ୍ଟର ହେଲା । ଗୋଟିଏ ମାସ ସେ ବେକା[illegible] ହୋଇ ଶ୍ରମିକ ବସ୍ତିରେ ବସି ରହିଲା । କାମ ନ କରିବା[illegible] ସର୍ଦ୍ଦାରର ଡାହାଳ କୁକୁରମାନେ ତାକୁ ଝୁଣିବାକୁ ଲାଗିଲେ[illegible] ଦାଦା, ଖାତାଦାର । ନିଜର ଆତ୍ମୀୟ ପାଇଁ ଟିକିଏ ହେ[illegible] ସହାନୁଭୂତି ନାହିଁ । କଂପାନୀର ଡାକ୍ତର ରାମକୁ ସୁସ୍ଥ କରି[illegible] ପାଇଁ ସେବାରେ ତ୍ରୁଟି କରୁ ନାହିଁ । କିନ୍ତୁ ଔଷଧ ଦେ[illegible] ବେଳେ କଂପାନୀର ନିର୍ଦ୍ଦେଶକୁ ମାନି ଖର୍ଚ୍ଚ କାଟ କରୁଛି ।

ସ୍ଥାନୀୟ ଲେବର ଅଫିସର ପ୍ରୋଜେକଟକୁ ଆସିବା ବେ[illegible] ରାମ ତାଙ୍କୁ ଯାଇ ଦେଖା କରିଛି । କଂପାନୀ ପକ୍ଷରୁ କ୍ଷ[illegible] ପୂରଣ ଦେବା ପାଇଁ ଦରଖାସ୍ତ କରିଛି । କିନ୍ତୁ ତାର ଦରଖା[illegible] ଲେବର ଅଫିସର ଫାଇଲରେ ପଡ଼ି ରହିଛି । ପ୍ରତି ମାସ[illegible] ଥରେ ଲେବର ଅଫିସର ପ୍ରୋଜେକଟକୁ ଆସେ, ମୁଖ୍[illegible] କଂଟ୍ରାକଟର, ଦାଦନ ଶ୍ରମିକ ସର୍ଦ୍ଦାରମାନଙ୍କଠାରୁ ମାସି[illegible] ପାଉଣା ସଂଗ୍ରହ କରି ଫେରିଯାଏ ସହରକୁ । କଂଟ୍ରାକଟ[illegible] ମାନଙ୍କ ସପକ୍ଷରେ ଭଲ ସୁପାରିଶ ପଠାଇ ଦିଲେ ମୁଖ୍[illegible] କାର୍ଯ୍ୟାଳୟକୁ ।

ରାମ ଗୋଡ଼ର ପ୍ଲାଷ୍ଟର ଖୋଲା ହେଲାଣି । [illegible] ବାଡ଼ିଟିଏ ଧରି ଛୋଟେଇ ଛୋଟେଇ ଚାଲବୁଲ କରୁଛି[illegible] କିନ୍ତୁ ତାର ବାମ ଗୋଡ଼ରେ ଉପରକୁ ପିଚ୍ଛରେ ଶଯ୍ୟାକ୍ଷ[illegible] 'ଘା' ଶୁଖୁ ନାହିଁ । ପିଲା ଦିନେ ଥରେ ଜାମୁକୋଳି ଗଛ[illegible] ପଡ଼ି ଯାଇଥିଲା । ତା' ଦେହରୁ ଘା' ଶୁଖିବା ପାଇଁ ଛଅମା[illegible] ଲାଗିଗଲା । ମା' ତାର କହୁଥିଲା "ବିଷର ପାଣିଆ" ଦେ[illegible] ଟିକିଏ ଆଞ୍ଚୁଡ଼ି ହୋଇଗଲେ ଅଙ୍ଗୁଠି ପଣିଯିବ । କେ[illegible] ଠାକୁରାଣି କେତେ ଗୁଣିଆଠାରୁ ତେଲ, ଘିଅ ମନ୍ତ୍ରା ହୋଇ ଅ[illegible] ଲାଗିଛି । ତା' ପରେ କ୍ଷତ ଶୁଖିଛି । ଏଠି କିଏ ଅଛି ତା' ପ[illegible] ଯାହା ପଦେ କହିବ, ଯିଏ ଟିକିଏ ଦରଦ ଦେଖାଇବ [illegible] ଉପରେ ବି ତାଡ଼ନା ।

ହରି ସର୍ଦ୍ଦାର ଛଅ ମାସରେ ଥରଟିଏ ପ୍ରୋଜେକ୍ଟ ସାଇଟ୍‌କୁ ଆସେ । ଗୋଟିଏ ସପ୍ତାହ ରହେ, ତା'ର ବିଲ, ଟଂକାର ଚେକ କଂପାନୀଠାରୁ ନେଇ ଚାଲୁ ଚାଲିଯାଏ । ସେଠାରୁ ପ୍ଲେନରେ ଦେଶକୁ ଚାଲିଯାଏ । ସର୍ଦ୍ଦାରର ମାଣେ ଜମି ନ ଥିଲା । ପନ୍ଦର କୋଡ଼ିଏ ବର୍ଷ ଭିତରେ ସିଏ ଜମିଦାର, ଲକ୍ଷ ପତି । ଗାଁରେ, ରାଜଧାନୀରେ ତାର ଅଟ୍ଟାଳିକା ନିର୍ମାଣ ଚାଲିଛି । ସିନେମା ହଲ ନିର୍ମାଣ, ଫିଲ୍ମ ପ୍ରୋଡେକସନ ରେ କଳା ଟଙ୍କାକୁ ଧଳା କରା ଯାଉଛି । ଅଳ୍ପ କିଛି ବ୍ୟାଙ୍କ ରଣର ସାଇନ ବୋର୍ଡ ସାମନାରେ ପ୍ରଦର୍ଶନ କରାଯାଉଛି । ଇନକମ୍ ଟ୍ୟାକସ୍ ଠକାଣିର ଆଦର୍ଶ ମାର୍ଗ ।

ରାମ କ୍ଷତର ଯନ୍ତ୍ରଣାରେ ଦିନ ରାତି ଛଟପଟ ହୁଏ । ବେଳେ ବେଳେ ନଦୀର ପ୍ରଖର ସ୍ରୋତରେ ଝାସ ଦେଇ ଆତ୍ମହତ୍ୟା କରିବାକୁ ଉଦ୍ୟତ ହୁଏ । କିନ୍ତୁ କିଏ ଜଣେ ଅଦୃଶ୍ୟ ଶକ୍ତି ତାକୁ ସେଥିରୁ ନିବୃତ୍ତ କରାଏ ।

ଦିନେ ସେ ଧ୍ୟାନଗଡ଼ରୁ ଯାତ୍ରୀ ଗୋଟିଏ ମାଲବାହୀ ଟ୍ରକରେ ଲୁଚି ଚାଲି ଯାଇଛି । ଯାତ୍ରୁ ବଜାରରୁ ଖଣ୍ଡିଏ ବାଡ଼ି ନେଇ ଶହ ଶହ ଲୋକ ରାହାଜି ଉପରେ ବୈଷ୍ଣୋଦେବୀଙ୍କ ଦର୍ଶନ ପାଇଁ ଆଗେଇ ଚାଲିଛି ।

"ଜୟ ମା ଦ କି ଜୟହୋ"
ପ୍ରେମ୍‌ସେ ବୋଲ ! ଜୟ ମା ଦି କି ଜୟହୋ"

ରାମ ଛୋଟେଇ ଛୋଟେଇ ବାଡ଼ିର ଆଶ୍ରା ନେଇ ପାହାଚ ପରେ ପାହାଚ ଡେଇଁ ଆଗକୁ ଚାଲିଛି । କ୍ଷତର ଯନ୍ତ୍ରଣା ଆଉ ନାହିଁ । ଜୁହୁଡ଼ି ଭିତରେ ରାସ୍ତା ପରିଷ୍କାର ବାରି ହେଉନାହିଁ । ମଝିରେ ମଝିରେ ଝିପି ଝିପି ବର୍ଷା ହେଉଛି । ଶହ ଶହ ପୁରୁଷ, ସ୍ତ୍ରୀ, ଯୁବକ, ବୃଦ୍ଧ, ଗୋଟିଏ ସ୍ୱର ତୋଳି ଲକ୍ଷ୍ୟ ସ୍ଥଳକୁ ଛୁଇଁବା ପାଇଁ ଆଗେଇ ଚାଲିଛନ୍ତି । ବୈଷ୍ଣୋଦେବୀ ମନ୍ଦିରର ଅଳ୍ପ ଦୂରରେ ଜଣେ ସାଧୁଙ୍କର ଆଶ୍ରମ । ରାମ ସେହି ଆଶ୍ରମ ପଟାଣରେ ଥକ୍କା ହୋଇ ବସି ଯାଇଛି ।

ସାଧୁ ଉପନିଷଦର ଚର୍ଚ୍ଚା କରୁଛନ୍ତି । ଋଷି ଯାଜ୍ଞବଳ୍କ୍ୟଙ୍କର ଦୁଇ ସ୍ତ୍ରୀ । କାତ୍ୟାୟନୀ କୁହନ୍ତି ମୁଁ ସବୁ ନେବ । ଆଶ୍ରମର ଜମି, ଗାଈ,, ପୋଖରୀ ସବୁ ନେବୁ । ଆଉ ଜଣେ ମୈତ୍ରେୟୀ । ସେ କୁହନ୍ତି ମୁଁ ଦେବି । ଯା' ନେଇ ମୁଁ ଅମର ହେବି ନାହିଁ ତାକୁ ନେଇ ମୁଁ କ'ଣ କରିବି ?

ରାମ ଚିନ୍ତା କରୁଛି । ଏ ସଂସାର କ'ଣ ହୋଇଛି । ପୁରୁଷ, ସ୍ତ୍ରୀ, ସମସ୍ତେ ଆଜି କେବଳ କାତ୍ୟାୟନୀର ବାହାକ ।

ତାର ନିଜର ରକ୍ତ ସଂପର୍କୀୟ ଦାଦା ହରି ସର୍ଦ୍ଦାର, ଲେବର ଅଫିସର ସମସ୍ତେ କେବଳ ନିଜର କୋଠା ବାଡ଼ି, ଭରି ଭରି ସୁନା, ବ୍ୟାଙ୍କ ବାଲାନ୍ସ ବଢ଼ାଇବା ପାଇଁ ଜୀବନ ସଂଗ୍ରାମ କରୁଛନ୍ତି ।

କେହିତ ଅନ୍ୟର ଦୁଃଖରେ ଭାଗୀଦାର ହେବା ପାଇଁ ଆଗେଇ ଆସୁ ନାହାନ୍ତି । ଅନ୍ୟକୁ ଦେବା ପାଇଁ ଇଚ୍ଛା ନାହିଁ, କେବଳ ଧନ ନେବା ପାଇଁ ସବୁକିଛି କରି ଯାଉଛନ୍ତି ।

ରାମର ସ୍ମୃତି ଭ୍ରମ ହୋଇଛି ।

ସେ ଆଖିବୁଜି ଆଶ୍ରମର ପଟାଣରେ ଢଳି ପଡ଼ିଛି ।

ଶହ ଶହ ଯାତ୍ରୀମାନଙ୍କର ସ୍ୱର ଅନୁରଣିତ ହେଉଛି :

"ଜୟ ମା ଦ କି ଜୟହୋ",
"ପ୍ରେମ ସେ ବୋଲ" "ଜୟ ମା ବି ଦି ଜୟ ହୋ" ।

୭ । ୨ ଡି. ଏସ,
ଏମ. ଏଲ. ଏ. କଲୋନୀ,
ୟୁନିଟ୍–୪, ଭୁବନେଶ୍ୱର ।



ହରିଜନ ଆଦିବାସୀ ସମ୍ମେଳନରେ ଉଦ୍‌ବୋଧନ

# ମହିଳା ଶ୍ରମିକଙ୍କ ସମ୍ପର୍କରେ

ଶ୍ରୀ ମୁରଲି ଜେନା

ଭାରତ ଇତିହାସରେ ମହିଳାମାନେ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଆସିଛନ୍ତି । ପ୍ରାଚୀନ ଯୁଗରେ ମଧ୍ୟ ପୁରୁଷ ଓ ସ୍ତ୍ରୀ ଉଭୟେ ଜୀବନ ରଥର ଚକ ଭାବେ ପରିଚିତ ଓ ପରିଗଣିତ । ସେଥିପାଇଁ ଉଭୟଙ୍କ ସହଯାତ୍ରା ବ୍ୟତୀତ ସମାଜର ଉନ୍ନତି ବା ପ୍ରଗତି ଯାହା କୁହ, ତାହା କେବେ ସମ୍ଭବ ହୋଇ ପାରିବ ନାହିଁ । ଏହି ଦୃଷ୍ଟିରୁ ୧୯୭୫ ମସିହାଟିକୁ ଆନ୍ତର୍ଜାତୀୟ ମହିଳା ବିବସ ରୂପେ ପାଳନ କରିବା ପାଇଁ ନିଷ୍ପତ୍ତି ନିଆଯାଇ ଥିଲା ଓ ଏହି ମହିଳା ବର୍ଷକୁ ଆଖି ଆଗରେ ରଖି ପୃଥିବୀର ବିଭିନ୍ନ ଦେଶରେ ମହିଳାମାନଙ୍କ ଅଧିକାର, କର୍ମ ନିଯୁକ୍ତି ଓ ସୁରକ୍ଷା ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା ମଧ୍ୟ ହୋଇ ଯାଇଛି ।

ପୃଥିବୀ ଜନସଂଖ୍ୟାର ଅର୍ଦ୍ଧେକ ହେଉଛନ୍ତି ମହିଳା । ପୁଣି ସେମାନେ ପୃଥିବୀର ଅର୍ଥନୈତିକ ସ୍ତରରେ ସକ୍ରିୟ ଜନସଂଖ୍ୟାର ଏକ ତୃତୀୟାଂଶ । ସେମାନଙ୍କ ପରିସଂଖ୍ୟାନଗତ ପ୍ରାଧାନ୍ୟ ସତ୍ତ୍ୱେ ଦେଶର ରାଜନୈତିକ, ଅର୍ଥନୈତିକ, ସାମାଜିକ ତଥା ସାଂସ୍କୃତିକ ଜୀବନରେ ସେମାନେ ଯେଉଁ ପରିମାଣରେ ସ୍ଥାନ ଅଧିକାର କରିବା କଥା, ତାହା କରି ପାରି ନାହାନ୍ତି । ଏ କ୍ଷେତ୍ରରେ ଇତିହାସ ଓ ପୁରାଣକୁ ବାରମ୍ବାର ସ୍ମୃତିରେ ଆଣିଲେ, ଆମେ ନିଶ୍ଚିତଭାବେ ଜାଣିପାରୁ ଯେ ପୁରାଣ ଯୁଗର ଗାର୍ଗୀ, ମୈତ୍ରେୟୀ, ଲୀଳାବତୀ ଓ ଇତିହାସର ଶିବାଜୀଙ୍କ ମାତା ଜିଜିବାଈ ଲକ୍ଷ୍ମୀବାଈ, ରାଣୀ ଲକ୍ଷ୍ମୀବାଈ, ଦୁର୍ଗାବତୀ ଓ ଓଡ଼ିଶାର ରାଣୀ ଶୁକଦେଇ, ରାଣୀ ପ୍ରଭାବତୀ ପ୍ରଭୃତି ଯେପରି ଜ୍ଞାନ ଓ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତାର ପଟାନ୍ତର ନାହିଁ । ସେଥିପାଇଁ ଓଡ଼ିଶାର ଖ୍ୟାତନାମା କବି ପଟ୍ଟନାୟକ ରାଣୀ ପ୍ରଭାବତୀଙ୍କ ମୁହଁରେ ଭାଷା ଫୁଟାଇ କହିଛନ୍ତି—

"ପୁରୁଷ ତୁମେ ତ ସ୍ୱଦେଶର ଲାଗି ଦର୍ପେ ଉଠୁଛ ଜାଗି  
ରମଣୀ ମୋହରି ଶକ୍ତି ନାହିଁକି ନିଜର ରକ୍ଷା ଲାଗି  
ବୃଥା ହେଉଅଛ ଭାଳି,

ପ୍ରଭାବତୀ ମୁହିଁ ବିକ୍ରମବତୀ ନୁହଁଇ ଅବଳା ନାରୀ ।  
ନାରୀ ମୁଁ କି ଖାଲି ଫୁଲ ସୁକୁମାରୀ ଫୁଲବାଣ ଖାଲି ହାଣେ  
ତୁମରି ପରାଏ ଧନୁ ଧରି କରେ ତୀର ମୁଁ ତ ମାରି ଜାଣେ  
ଅଶ୍ୱ ବାହାନେ ବସି,

ଦୃଢ଼ ସାହସେ ଶତ୍ରୁ ଗହଣେ ସଂଗ୍ରାମି ପାରେ ଅସି ।"

ପୃଥିବୀର ବିଶିଷ୍ଟ ନାଟ୍ୟକାର ବର୍ଣ୍ଣାଡ ଶ ଥରେ ମତ ପ୍ରକାଶ କରି କହିଥିଲେ ଯେ ଗୃହ ହେଉଛି "ବାଳିକାର ବନ୍ଦୀଶାଳା ଓ ନାରୀର କର୍ମଶାଳା । ତେଣୁ ଏଇ ମତ ଅନୁଯାୟୀ ଆମ ସମାଜର ବଦ୍ଧମୂଳ ଧାରଣା ଥିଲା ଯେ ନାରୀ କେବଳ ଘରକାମ ପାଇଁ ଯୋଗ୍ୟ ଓ ଏହା ଛଡ଼ା ସେ ଆଉ କିଛି କରି ପାରିବ ନାହିଁ । କିନ୍ତୁ ଆଜିର ପରିପ୍ରେକ୍ଷୀରେ ଏ କଥା ଆଦୌ କୁହାଯାଇ ନ ପାରେ, କାହିଁକି ନା ଆଜିର ଯୁଗରେ ମଧ୍ୟ ଭାଲେଣ୍ଟିନା ଟେରେସ୍କୋଭା ରନ୍ଧନ ଶାଳାର ମୋହ ମାଦକତା ତ୍ୟାଗ କରି ମହାକାଶ ଯାତ୍ରୀ ଭାବରେ ପୃଥିବୀ ଇତିହାସରେ ଯେଉଁ ମୂଲ୍ୟବୋଧ ସୃଷ୍ଟି କରିଛନ୍ତି, ତାହା ଯୁଗେ ଯୁଗେ ଅବିସ୍ମରଣୀୟ । ତେଣୁ ଏଥି ପାଇଁ ମାନସିକ ଓ ଶାରୀରିକ କ୍ଷେତ୍ରରେ ନାରୀ ପୁରୁଷ ଠାରୁ କୌଣସି ମତେ ନ୍ୟୂନ ନୁହେଁ ।

ବର୍ତ୍ତମାନ ଚାଲନ୍ତୁ ଫେରିଯିବା ଋଗ୍‌ବେଦର ଅଷ୍ଟମ ମଣ୍ଡଳ ୩୩ ସୂକ୍ତ ଓ ୧୯ ମନ୍ତ୍ରର ସେଇ ଚିନ୍ତା ଓ ଚେତାବନୀକୁ, ଯେଉଁଠାରେ ଉଦଘୋଷିତ ହୋଇଛି—"ନାରୀ ମନୁଷ୍ୟ ସମାଜରେ ନିର୍ମାଣକାରିଣୀ; ତାର ସ୍ଥିତିରେ ରାଷ୍ଟ୍ରର ଜାତୀୟ ଚରିତ୍ର ପ୍ରତିଫଳିତ ହୋଇଥାଏ ଏବଂ ତାର ଦୃଷ୍ଟିରେ ମଣିଷ ସମାଜର ଭିତ୍ତି ପ୍ରସ୍ତର ବୋହିଯାଏ । ତାର ସୁଖ ଓ ସମୃଦ୍ଧିରେ ସମାଜ ପୁଷ୍ଟ ଓ ଯଶସ୍ୱୀ ହୋଇଥାଏ" । ମନୁ ସ୍ମୃତିରେ ମଧ୍ୟ ନାରୀମାନଙ୍କୁ ଉଚ୍ଚ ସ୍ଥାନ ଦିଆ ହୋଇ କୁହାଯାଇଛି :—

"ଯତ୍ର ନାର୍ଯ୍ୟାସ୍ତୁ ପୂଜ୍ୟନ୍ତେ ତତ୍ର ରମନ୍ତେ ଦେବତା" । ଏଇ ପ୍ରସଙ୍ଗରେ ପୁଣି ମଧ୍ୟ ସ୍ମରଣରେ ଆସେ ଋଗବେଦର ପ୍ରଥମ ମଣ୍ଡଳ ୧୨୪ ସୂକ୍ତ, ୨୦ ମନ୍ତ୍ର, ଯେଉଁଠାରେ କଥିତ ହୋଇଛି— "ନାରୀ ଓ ପୁରୁଷ ଦୁଇଟି ସହଯୋଗୀ ପକ୍ଷୀ" ।

ଏତ ଗଲା ସାଧାରଣ ମହିଳାମାନଙ୍କ ସଂପର୍କରେ କେତେକ ଆଲୋଚନା । ଚାଲନ୍ତୁ, ବର୍ତ୍ତମାନ ମହିଳା ଶ୍ରମିକମାନଙ୍କ ସଂପର୍କରେ କିଞ୍ଚିତ ଆଲୋଚନା କରିବା ।

ଆଜିର ଶ୍ରମିକ ସମାଜରେ ମହିଳା ଶ୍ରମିକମାନଙ୍କର ସଂଖ୍ୟା କମ ନୁହେଁ । ପୃଥିବୀର ସମଗ୍ର ଶ୍ରମିକ ଶ୍ରେଣୀର ଏକ ତୃତୀୟାଂଶ ମହିଳା ଶ୍ରମିକ । ଅବଶ୍ୟ ଏସିଆ ଓ ଆଫ୍ରିକା ଭଳି କୃଷି ପ୍ରଧାନ ଓ ଅନଗ୍ରସର ଦେଶଗୁଡ଼ିକରେ ଏମାନଙ୍କ ଆନୁପାତିକ ସଂଖ୍ୟା

କଣ୍ଠ ଅଟେ । ଭାରତରେ ୧୯୭୧ ମସିହା ଜନଗଣନା ଅନୁଯାୟୀ ମହିଳା ଶ୍ରମିକମାନଙ୍କର ସଂଖ୍ୟା ହେଉଛି ୩ କୋଟି ୧୩ ଲକ୍ଷ । ଭାରତର ୧୮ କୋଟି ୪ ଲକ୍ଷ ମୋଟ ଶ୍ରମିକମାନଙ୍କ ମଧ୍ୟରୁ ଶତକଡ଼ା ୧୭ ଭାଗ ହେଉଛନ୍ତି ମହିଳା ଶ୍ରମିକ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଅର୍ଥାତ ୨ କୋଟି ୫୧ ଲକ୍ଷ ବା ଶତକଡ଼ା ୮୦ ଭାଗ କୃଷି ଶ୍ରମିକ ଏବଂ ବଳକା ୨୦ ଭାଗରୁ ୨.୬ ଶିଳ୍ପରେ, ୪.୪ ଭାଗ ଘରକରଣା, ୩ ଭାଗ ଗ୍ଲ, କଫି ଓ ଫଳ ବଗିଚ୍ଛ ଏବଂ ଖଣି ଖାଦାନରେ, ୭ ଭାଗ ବିଭିନ୍ନ ସେବାମୂଳକ କାମରେ ଏବଂ ବଳକା ୩ ଭାଗ ନିର୍ମାଣ କାର୍ଯ୍ୟ, ପରିବହନ, ଯୋଗାଯୋଗ ଏବଂ ବାଣିଜ୍ୟରେ କାମ କରିଥାନ୍ତି । ତେଣୁ ଏପରି କୌଣସି କାମଧନ୍ଦା ନାହିଁ ଯେଉଁଥିରେ କି ଆଜି ମହିଳା ଶ୍ରମିକମାନେ କାମ କରୁନାହାନ୍ତି ।

ଆମେ ହାସଲ କରିଥିବା ଜାତୀୟ ସ୍ୱାଧୀନତା, ଗଣତନ୍ତ୍ର ତଥା ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ଏବଂ ଦ୍ରୁତ ସାମାଜିକ ବିବର୍ତ୍ତନର ଏହା ଏକ ସଦ୍ୟଫଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ ଦେଶର ଶିଳ୍ପ କାରଖାନାମାନଙ୍କରେ କାମ କରୁଥିବା ମୋଟ ମହିଳା ଶ୍ରମିକମାନଙ୍କ ମଧ୍ୟରୁ ଶତକଡ଼ା ୬ ଭାଗ ସଂଗଠିତ । ଏଥି ମଧ୍ୟରୁ ପ୍ରାୟ ୧୧ ଲକ୍ଷ ମହିଳା ଶ୍ରମିକ କଳକାରଖାନା, ଖଣି ଖାଦାନ ଏବଂ ବଗିଚାଗୁଡ଼ିକରେ କାମ କରନ୍ତି । କଳ କାରଖାନାରେ କାମ କରୁଥିବା ମହିଳା ଶ୍ରମିକ-ମାନଙ୍କ ମଧ୍ୟରୁ ଅଧିକାଂଶ ଅର୍ଥାତ ୮୦ ଭାଗ କେବଳ ୭ଟି ରାଜ୍ୟରେ କାମ କରିଥାନ୍ତି । ସେ ରାଜ୍ୟଗୁଡ଼ିକ ହେଲ–ଆନ୍ଧ୍ର, ଗୁଜୁରାଟ, କେରଳ, କର୍ଣ୍ଣାଟକ, ମହାରାଷ୍ଟ୍ର, ତାମିଲନାଡୁ, ଓ ପଶ୍ଚିମବଙ୍ଗ । ଏ ଦୃଷ୍ଟିରୁ ଆମ ଓଡ଼ିଶା ରାଜ୍ୟରେ ମହିଳା ଶ୍ରମିକମାନଙ୍କ ସଂଖ୍ୟା ବଢ଼ାଇବାକୁ ହେଲେ ସବୁ ଧରଣର କାର୍ଯ୍ୟ ନିଯୁକ୍ତିରେ ମହିଳାମାନଙ୍କୁ ଅଗ୍ରାଧିକାର ଦେବାକୁ ହେବ ।

ମହିଳା ଶ୍ରମିକଙ୍କର ମଙ୍ଗଳ ତଥା କଲ୍ୟାଣ ଆମ ସାମ୍ବିଧାନିକ ପରଂପରାରେ ଏକ ବଳିଷ୍ଠ ଆଭିମୁଖ୍ୟ ଓ ବିଶିଷ୍ଟ ଭୂମିକା ଗ୍ରହଣ କରିଛି । ଜାତୀୟ କଂଗ୍ରେସର ୧୯୩୧ ଅଧିବେଶନରେ ଶ୍ରମିକମାନଙ୍କ ମଙ୍ଗଳ ନିମିତ୍ତ ଯେଉଁ ଯୋଜନା ପ୍ରଣୟନ କରାଯାଇ ଥିଲ, ତାହାରି ଭିତ୍ତିଭୂମି ଉପରେ ଆମ ସମ୍ବିଧାନର ପ୍ରଣେତାମାନେ ସମ୍ବିଧାନ ନିର୍ଦ୍ଦେଶ ତତ୍ତ୍ୱରେ ଆବଶ୍ୟକୀୟ ବ୍ୟବସ୍ଥା କରିଛନ୍ତି । ତାହାହେଲ–(କ)ଜୀବନ ଧାରଣ ପାଇଁ ରୋଜଗାର କରିବା ସକାଶେ ମହିଳା ନିର୍ବିଶେଷରେ ସବୁ ନାଗରିକଙ୍କର ସମାନ ଅଧିକାର ଅଛି, (ଖ) ପୁରୁଷ ମହିଳା ତଥା କୋମଳମତି ଶିଶୁମାନଙ୍କ ସ୍ୱାସ୍ଥ୍ୟ ଓ କ୍ଷମତାର ଅପବ୍ୟବହାର କରାଯିବ ନାହିଁ ଏବଂ ଅର୍ଥନୈତିକ କାରଣରୁ ଆବଶ୍ୟକ ପଡୁଥିଲେ ମଧ୍ୟ ବୟସ ଓ କ୍ଷମତା ଦୃଷ୍ଟିରୁ ଅନୁପଯୋଗୀ କାମଧନ୍ଦା କରିବାପାଇଁ ନାଗରିକମାନଙ୍କୁ ବାଧ୍ୟ କରାଯାଇ ପାରିବ ନାହିଁ । ୧୯୭୫ ମସିହା ସେପ୍ଟେମ୍ବର ୨୬ ତାରିଖ ଦିନ ଭାରତର ରାଷ୍ଟ୍ରପତି ଏକ ସ୍ୱତନ୍ତ୍ର ନିର୍ଦ୍ଦେଶନାମା ବଳରେ ଏଇ ସାମ୍ବିଧାନିକ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇଛନ୍ତି, ଯାହା ଫଳରେ ଉଭୟ ପୁରୁଷ ଏବଂ ମହିଳା ଶ୍ରମିକ ସମାନ କାମ ପାଇଁ ସମାନ ମଜୁରୀ ପାଇବେ ଏବଂ କୌଣସି ମାଲିକ ଏକ ପ୍ରକାର କାମ କରୁଥିବା ପୁରୁଷ ଏବଂ ମହିଳା ଶ୍ରମିକଙ୍କୁ କମ ଅଧିକେ ମଜୁରୀ ଦେଇ ପାରିବେ ନାହିଁ । କୌଣସି ନିଯୋକ୍ତା ବା ମାଲିକ ଏହା ଖିଲପ କଲେ ସେଥିପାଇଁ ଦୋଷୀ ବା ଦାୟୀ ହେବେ । ଏହା ଛଡ଼ା ନିଯୁକ୍ତି କ୍ଷେତ୍ରରେ ମଧ୍ୟ ମହିଳା ଶ୍ରମିକମାନଙ୍କୁ ପୁରୁଷମାନଙ୍କ ସହ ସମାନ ସୁବିଧା ଓ ସୁଯୋଗ ଦେବା ପାଇଁ ରାଜ୍ୟ ସରକାରମାନେ ଉପଦେଷ୍ଟା କମିଟି ଗଠନ କରିବେ ଏବଂ ଏଥିରେ ଉଭୟ ମହିଳା ଓ ପୁରୁଷଙ୍କ ପାଇଁ ସମାନ ସମାନ ସ୍ଥାନ ସଂରକ୍ଷିତ କରିବେ ।

ତା୧୮-୧୨-୧୯୭୨ରିଖର ଜାତିସଂଘରେ ଗୃହୀତ ହୋଇଥିବା ଏକ ଐତିହାସିକ ପ୍ରସ୍ତାବରେ ୧୯୭୫ ମସିହାକୁ ମହିଳା ବର୍ଷ ରୂପେ ପାଳନ କରିବାକୁ ଯେଉଁ ଘୋଷଣା ଦିଆଯାଇଥିଲ ତାହାର ପ୍ରଧାନ ଲକ୍ଷ୍ୟ ହେଲ, ନାରୀ ଜାତିର ସର୍ବାଙ୍ଗୀନ ବିକାଶ, ଯାହା ଫଳରେ ସମଗ୍ର ପୃଥିବୀର ସାମାଜିକ ତଥା ଅର୍ଥନୈତିକ ଅଗ୍ରଗତି କ୍ଷିପ୍ରତର ଏବଂ ସୁଗମ ହୋଇ ପାରିବ । ତେଣୁ ନାରୀ ଜାତିର ସାମୂହିକ କଲ୍ୟାଣରେ ଏପରି ଏକ ବ୍ୟାପକ ଏବଂ ଦୃଢ଼ ପଦକ୍ଷେପ ମାନବ ସମାଜ ଇତିହାସରେ ବିରଳ ।

ଏଣୁ ଜାତିସଂଘର ଏଇ ମହାନ୍ ଘୋଷଣାରେ ନାରୀ ଜାତିର ମୁକ୍ତି ଓ ବିକାଶ ଆଦି ପ୍ରତ୍ୟେକ ଦେଶର ସରକାରଙ୍କ ଉପରେ ଏକ ଗୁରୁ ଦାୟିତ୍ୱରେ ପରିଣତ ହୋଇଛି । ଏହି ଗୁରୁ ଦାୟିତ୍ୱ ଗୁଡ଼ିକ ହେଲ–(୧) ପୁରୁଷ ଏବଂ ମହିଳାମାନଙ୍କ ମଧ୍ୟରେ ସମାନତାର ବିକାଶ (୨) ସମଗ୍ର ବିକାଶମୂଳକ କାର୍ଯ୍ୟଗୁଡ଼ିକରେ ମହିଳାମାନଙ୍କର ଅଂଶ ଗ୍ରହଣ ଅର୍ଥାତ ସ୍ଥାନୀୟ, ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ଆର୍ଥିକ ତଥା ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ମହିଳାମାନଙ୍କ ଅଂଶଗ୍ରହଣ ଉପରେ ଗୁରୁତ୍ୱ ଆରୋପ (୩) ଦେଶ ଦେଶ ମଧ୍ୟରେ ବନ୍ଧୁତା ତଥା ବିଶ୍ୱଶାନ୍ତି ପାଇଁ ମହିଳାମାନଙ୍କ ଅବଦାନ ଯେପରି ବୃଦ୍ଧି ହୋଇ ପାରିବ, ତାର ସୁବ୍ୟବସ୍ଥା ।

ମହିଳାମାନଙ୍କର କାମ କରିବାର ସମୟ ସୀମା ତଥା ସେମାନଙ୍କ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନ ଦେଇ ସେମାନଙ୍କୁ କାମରେ ଲଗାଇବା ବା ଖଟାଇବା ସମାଜ ପାଇଁ ଏକ ବିପଦ । ତେଣୁ ସମାଜର ସ୍ୱାର୍ଥ ଦୃଷ୍ଟିରୁ ଏ କ୍ଷେତ୍ରରେ ସେମାନଙ୍କୁ ନିରାପତ୍ତା ଦିଆଯିବାର ଯଥାର୍ଥତା ରହିଛି । ୧୯୮୧ କାରଖାନା ଆଇନରେ ପ୍ରଥମ ଥର ପାଇଁ ବ୍ୟବସ୍ଥା ରଖାଯାଇଥିଲ ଯେ ଦିନରେ ଦେଢ଼ ଘଣ୍ଟା ବିଶ୍ରାମ ସହିତ ୧୧ ଘଣ୍ଟା କାମ କରିବାକୁ ହେବ । ୧୯୪୮ ମସିହା କାରଖାନା ଆଇନରେ କାମ କରିବା ସମୟ ଦିନରେ ୯ ଘଣ୍ଟା ରଖାଗଲ । ସନ୍ଧ୍ୟା ସାତଟାରୁ ତା' ଆରଦିନ ସକାଳ ୬ଟା ପର୍ଯ୍ୟନ୍ତ କୌଣସି ମହିଳା ଶ୍ରମିକଙ୍କୁ କାମରେ ନ ଖଟାଇବା ଏବଂ ସପ୍ତାହରେ ଦିନେ ଛୁଟି ଦେବା ପାଇଁ ଏଇ ଆଇନରେ ବ୍ୟବସ୍ଥା ରହିଛି । ଏହା ଛଡ଼ା ବିପଦସଙ୍କୁଳ କାର୍ଯ୍ୟରେ ସେମାନଙ୍କୁ ନିଯୁକ୍ତ ନ କରିବା ପାଇଁ ଆଇନରେ କଟକଣା ମଧ୍ୟ ରହିଛି ।

ବିଶେଷକରି ୫୦ରୁ ଅଧିକ ମହିଳା ଶ୍ରମିକ କାମ କରୁଥିବା କାରଖାନାରେ ସେମାନଙ୍କର ୬ ବର୍ଷରୁ କମ ବୟସର ପୁଅ ଝିଅଙ୍କ ବ୍ୟବହାର ପାଇଁ ପ୍ରଶସ୍ତ ପରିଷ୍କାର ଓ ପରିଚ୍ଛନ୍ନପୂର୍ଣ୍ଣ ଗୋଟିଏ କିମ୍ବା ଅଧିକ ଶିଶୁସଦନ ବା କୋଠରୀ ରହିବ । ଏଥିରେ ମହିଳା ଶ୍ରମିକମାନଙ୍କ ଶିଶୁପୁତ୍ର ବା କନ୍ୟାମାନଙ୍କର ଯତ୍ନ ନେବା ପାଇଁ ଗୋଟିଏ ତାଲିମ ପ୍ରାପ୍ତ ମହିଳା ଦାୟିତ୍ୱରେ ରହିବେ । ପୁଅ ଝିଅଙ୍କୁ ଖୁଆଇବା ପାଇଁ ମା'ମାନଙ୍କୁ ମଝିରେ ମଝିରେ କାମରୁ ଛାଡ଼ି

ଦିଆଯିବ । ଓଡ଼ିଶା ଦୋକାନ ବାଣିଜ୍ୟ ପ୍ରତିଷ୍ଠାନ ଆଇନାନୁଯାୟୀ ଶିଳ୍ପାନୁଷ୍ଠାନମାନଙ୍କରେ ସଂଧ୍ୟା ୭ ଘଣ୍ଟା ପରେ ନିଯୁକ୍ତିକୁ ବାରଣ କରିବା ସଙ୍ଗେ ସଙ୍ଗେ ପ୍ରସବ ପୂର୍ବରୁ ଓ ପରେ ମହିଳା ଶ୍ରମିକଙ୍କୁ ଏପରି ସମୁଦାୟ ୧୨ ସପ୍ତାହ ପାଇଁ ଛୁଟି ଦିଆଯିବ ।

୧୯୫୨ ମସିହା ଖଣି ଆଇନ ଅନୁସାରେ ସକାଳ ୬ଟାରୁ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ ସମୟକୁ ଛାଡ଼ି ଅନ୍ୟ ସମୟରେ ମହିଳା ଶ୍ରମିକଙ୍କୁ ଖଣିର ଉପର ଭାଗରେ ନିଯୁକ୍ତ କରାଯାଇ ପାରିବ ନାହିଁ । ପୂର୍ବ ଦିନର କାମ ଶେଷ ଓ ପର ଦିନର କାମ ଆରମ୍ଭ ମଧ୍ୟରେ ପ୍ରତ୍ୟେକଙ୍କୁ ଅନ୍ତତଃ ପକ୍ଷେ ୧୧ ଘଣ୍ଟା ବିଶ୍ରାମ ନେବା ପାଇଁ ବ୍ୟବସ୍ଥା ରହିବ ।

ପ୍ରସୂତି ହିତ ଆଇନ ଅନୁଯାୟୀ ଜଣେ ମହିଳା ଶ୍ରମିକ ପ୍ରସୂତି ଅବସ୍ଥାର ଅବ୍ୟବହିତ ପୂର୍ବରୁ ଯେତେ ଦିନ ଅନୁପସ୍ଥିତ ରହିବେ ସେତେ ଦିନ ପାଇଁ ହକ୍‌ଦାର ହେବେ । କୌଣସି ମହିଳା ଶ୍ରମିକ ସର୍ବାଧିକ ୧୨ ସପ୍ତାହ ନିମିତ୍ତ ମାତୃମଙ୍ଗଳ ଭତ୍ତା ନିମିତ୍ତ ହକ୍‌ଦାର ହେବେ ବୋଲି ୫ ଧାରାରେ ଉଲ୍ଲେଖ ଅଛି । ଏଥିରେ ୬ ଧାରାର ବ୍ୟବସ୍ଥା ଅନୁଯାୟୀ ଗର୍ଭାବସ୍ଥା କିମ୍ବା ପ୍ରସୂତିଜନିତ ରୋଗାକ୍ରାନ୍ତ ହେଲେ ୧୨ ସପ୍ତାହ କାଳ ପ୍ରସୂତି ଛୁଟି ସହ ଆହୁରି ସର୍ବାଧିକ ଏକମାସ ସମୟ ମଜୁରୀ ସହ ଛୁଟି ପାଇବାର ବ୍ୟବସ୍ଥା ମଧ୍ୟ ରହିଛି । ଯଦ ୬ ଧାରାର ୩ ଉପଧାରା ଅନୁଯାୟୀ ଜଣେ ମହିଳା ଶ୍ରମିକଙ୍କର ଗୋଟିଏ ସନ୍ତାନ ଥାଏ ଓ ସେ ତା'ର ସେବା କରୁଥାନ୍ତି, ତା' ହେଲେ ସେ ତାଙ୍କର କାର୍ଯ୍ୟ ସମୟ ମଧ୍ୟରେ ସେପରି ସେବା କରିବା ପାଇଁ ନିୟମିତ ବିରତି କାଳ ସହ ଅଧଘଣ୍ଟା ଲେଖାଏଁ ଆଉ ଦୁଇ ଥର ବିଶ୍ରାମ ସମୟ ପାଇବାର ବ୍ୟବସ୍ଥା ରହିଛି । ସନ୍ତାନ ପ୍ରସବ ଯୋଗୁଁ କୌଣସି ମହିଳା ଶ୍ରମିକ କାର୍ଯ୍ୟରୁ ଅନୁପସ୍ଥିତ ରହିଲେ, ସେଥି ନିମନ୍ତେ ସଂପୃକ୍ତ ମାଲିକ ମହିଳା ଶ୍ରମିକଙ୍କୁ କାର୍ଯ୍ୟରୁ ବରଖାସ୍ତ କରି ପାରିବେ ନାହିଁ ବୋଲି ଉଲ୍ଲେଖ ରହିଛି । ପୁନଶ୍ଚ ଯଦି କୌଣସି ମହିଳା ଶ୍ରମିକଙ୍କୁ ପ୍ରସୂତି ହିତ ଦେବା ପାଇଁ ସଂପୃକ୍ତ ମାଲିକ ମନା କରି ଦିଅନ୍ତି, ସେ ସଂପର୍କୀୟ ଆଦେଶ ପାଇବାର ୬୦ ଦିନ ମଧ୍ୟରେ ମହିଳା ଶ୍ରମିକ ଏଇ ଆଇନାନୁସାରେ ବିଜ୍ଞାପିତ ପରିଦର୍ଶକ ଅଧିକାରୀଙ୍କ ନିକଟରେ ଆବେଦନ କରିପାରିବେ । ପରିଦର୍ଶକ ଏପରି ଅଭିଯୋଗ ପାଇବା ସଙ୍ଗେ ସଙ୍ଗେ ସଂପୃକ୍ତ ମହିଳା ଶ୍ରମିକଙ୍କୁ ପ୍ରସୂତି ହିତ ଦେବା ସଂପର୍କରେ ବିହିତ ଅନୁସନ୍ଧାନ କରି ସେଇ ଶିଳ୍ପାନୁଷ୍ଠାନର ମାଲିକଙ୍କୁ ନିର୍ଦ୍ଦେଶ ଦେବେ । ଯଦି କୌଣସି ମାଲିକ ପ୍ରସୂତି ହିତ ଦେବାରେ ଖିଲାପ କରନ୍ତି, ସେ ପ୍ରସୂତି ହିତ ବାବଦ ସମସ୍ତ ଦେୟ ଦେବା ସଙ୍ଗେ ସଙ୍ଗେ ତିନିମାସ ପର୍ଯ୍ୟନ୍ତ କାରାଦଣ୍ଡ କିମ୍ବା ପାଞ୍ଚଶହ ଟଙ୍କା ପର୍ଯ୍ୟନ୍ତ ଜୋରିମାନା କିମ୍ବା ଉଭୟ ଦଣ୍ଡରେ ଦଣ୍ଡିତ ହେବେ ।

ବିଡ଼ି ଏବଂ ଚୁରୁଟ (ନିଯୁକ୍ତି ସର୍ତ୍ତାବଳୀ) ଆଇନ୍‌, ୧୯୬୬ ଅନୁସାରେ କାରଖାନା ଆଇନର ବ୍ୟବସ୍ଥା କରି ଅନୁରୂପ ବ୍ୟବସ୍ଥାରେ କାର୍ଯ୍ୟ କରୁଥିବା ସମୟରେ ମହିଳା ଶ୍ରମିକଙ୍କ ଶିଶୁଙ୍କ ଲାଳନ ପାଳନ ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା ଉଲ୍ଲିଖିତ ଅଛି ।

ଓଡ଼ିଶା ଠିକାଦାର (ଉଚ୍ଛେଦ ଏବଂ ନିୟନ୍ତ୍ରଣ) ନିୟମାବଳୀ, ୧୯୭୫ ଅନୁସାରେ ୨୦ ଜଣ କିମ୍ବା ତଦୂର୍ଦ୍ଧ୍ୱ ମହିଳା ଶ୍ରମିକ ନିୟୋଜିତ ସମସ୍ତ ଠିକାଦାରୀ ସଂସ୍ଥାରେ ସାଧାରଣ ଶିଶୁବିହାର ସମେତ ମହିଳା ଶ୍ରମିକଙ୍କ ପାଇଁ କାରଖାନା ଆଇନାନୁସାରେ ନିର୍ଦ୍ଦିଷ୍ଟ ଅନ୍ୟାନ୍ୟ ସୁବିଧା ସୁଯୋଗର ବ୍ୟବସ୍ଥା ରହିଛି ।

ଏତଦ ବ୍ୟତୀତ ଶ୍ରମିକ ସଂଗଠକମାନେ ମହିଳା ଶ୍ରମିକମାନଙ୍କ ପ୍ରତି ନିଜର ପୁରାତନ ମନୋଭାବ ତ୍ୟାଗ କରି ମହିଳାମାନଙ୍କୁ କେବଳ ସଂଗ୍ରହାଳୟ ବା ମ୍ୟୁଜିୟମର ବସ୍ତୁ ଭଳି ନ ଦେଖି ଶ୍ରମିକ ସଂଗଠନଗୁଡ଼ିକର ନେତୃତ୍ୱ ନେବା ପାଇଁ ସେମାନଙ୍କୁ ଅଗ୍ରାଧିକାର ସହ ସୁଯୋଗ ଦେବା ଦରକାର । ସଂଗଠିତ ଶ୍ରମିକମାନଙ୍କୁ ସ୍ମରଣ ରଖିବାକୁ ହେବ ଯେ ମହିଳା ଶ୍ରମିକମାନେ ଶ୍ରମିକ ଆନ୍ଦୋଳନର ନେତୃତ୍ୱ ଯେତେ ବେଶୀ ସଂଖ୍ୟାରେ ଆସି ପାରିବେ, କେବଳ ମହିଳା ଶ୍ରମିକମାନଙ୍କର ମୁକ୍ତି ଏବଂ ବିକାଶହିଁ ଯେ ସୁଗ୍ଧ ଓ ସୁଗମ ହେବ, ତାହା ନୁହେଁ ବରଂ ଟ୍ରେଡ ୟୁନିୟନ ସଂଗଠନରେ ବହୁ ବର୍ଷର ଜମାଟ ବାନ୍ଧି ରହିଥିବା ବହୁ ବ୍ୟାଧି ମଧ୍ୟ ସହଜେ ଦୂର ହୋଇ ପାରିବ । କାରଣ ମହିଳାମାନେ ପୁରୁଷମାନଙ୍କ ଅପେକ୍ଷା ବେଶୀ ଶୃଂଖଳିତ, ନୀତିବାନ୍ ଓ ଦକ୍ଷ ।

ଭଗତପୁର
କଟକ-୯




ସମ୍ବଲପୁର-ତାଳଚେର ରେଳ ସଂଯୋଗ ଭିତ୍ତିପ୍ରସ୍ତର ସ୍ଥାପନ ଉତ୍ସବରେ ଶ୍ରୀ ରାଜୀବ ଗାନ୍ଧୀ ।




## TRADE FAIR at PRAGATI MAIDAN

The Prime Minister, Shri Rajiv Gandhi addressing a public meeting on the occasion of 67th birth anniversary of the late Prime Minister, Shrimati Indira Gandhi at Boat Club, New Delhi on November 19, 1984.





...ନନ୍ଦ କୌଶର (୧୬) "ମାଣିକ"



"ନୀଳଚକ୍ର" ସୁଜିତ ମହାନ୍ତି (୧୩) ନବମ ଶ୍ରେଣୀ



ଗାୟତ୍ରୀ ମିଶ୍ର (୧୦) ଅଷ୍ଟମ ଶ୍ରେଣୀ "ନବଗୁଞ୍ଜର"

# ରେଳଯାତ୍ରାରେ ସତର୍କତା

ଶ୍ରୀ କୀର୍ତ୍ତନ ଲେଙ୍କା

ଏକ ପ୍ରବାଦ ଅଛି ଭାଗ୍ୟ ଗୋଟିଏ ଦୁର୍ଘଟଣାରୁ ମଣିଷକୁ ରକ୍ଷାକରେ କିନ୍ତୁ ସତର୍କତା ସମସ୍ତ ଦୁର୍ଘଟଣାରୁ ମନୁଷ୍ୟକୁ ବିପଦ ମୁକ୍ତ କରେ । ଇଂରାଜୀରେ କୁହାଯାଏ, "Luck Prevents an accident Vigilance prevents all accidents".

ଉପରୋକ୍ତ ପ୍ରବାଦର ସତ୍ୟତା ରେଳଯାତ୍ରାରେ ଦୈନନ୍ଦିନ ଘଟୁଥିବା ଘଟଣାରୁ ପ୍ରତିପାଦିତ ହୋଇଛି ଏବଂ ହେଉଛି । ଏଣୁ ରେଳଯାତ୍ରାରେ ସତର୍କତା ସର୍ବାଦୌ ଆବଶ୍ୟକ ।

ରେଳଯାତ୍ରା ଅନ୍ୟାନ୍ୟ ଯାନ ବାହାନର ଯାତ୍ରାଠାରୁ ପୃଥକ । ରେଳରେ ବହୁଦୂର ଘଣ୍ଟା ଘଣ୍ଟା ବସି ଯାତ୍ରା କଲେ ଯାତ୍ରୀକୁ ବିରକ୍ତ ଲଗେ । ସହଯାତ୍ରୀମାନେ ପରସ୍ପର ସହିତ କଥୋପକଥନ ହେବାକୁ ଇଚ୍ଛା କରନ୍ତି । ନୂଆ ନୂଆ ଷ୍ଟେସନ ଆସିଲେ ଯାତ୍ରୀ ଷ୍ଟେସନ ଦେଖିବାକୁ ଆଗ୍ରହୀ ହୁଅନ୍ତି । ଏହି ଦୁଇଟି ପରିସ୍ଥିତିର ସୁବିଧା ନେଇଥାନ୍ତି ରେଳରେ, ଅପରାଧୀମାନେ । ଅନେକ ଅପରାଧ ସମୀକ୍ଷାକରି କେତୋଟି ଉଦାହରଣ ଯାତ୍ରୀଙ୍କ ଉପକାର ନିମନ୍ତେ ଅବତାରଣା କରାଯାଉଛି ।

## ରେଳଯାତ୍ରାରେ ଚୋରି

(୧) କଲିକତାରୁ ବମ୍ବେ ଏକ ନବଦମ୍ପତି ପ୍ରଥମଶ୍ରେଣୀ ଡବାରେ ଯାତ୍ରା କରୁଥିଲେ । ସେମାନେ ଏକ ବିବାହ ଉତ୍ସବରେ ଯୋଗଦେଇ ଫେରୁଥିଲେ । ଏକ କୁଖ୍ୟାତ ଚୋରଦଳ ଏହା ଜାଣିପାରି ଏହି ଯାତ୍ରୀଙ୍କ ପାଖ ଟିକଟ କିଣି ଯାତ୍ରା ଆରମ୍ଭ କଲେ କଲିକତାରୁ । ଗଭୀର ନିଦ୍ରାରେ ଏହି ଦମ୍ପତି ଶୋଇଥିବା ସମୟରେ ଚୋରମାନେ ତାଙ୍କର ବଡ଼ ବଡ଼ ଟ୍ରଙ୍କ ନେଇଯାଇଥିଲେ । ଏହିପରି ଅନେକ ଘଟଣାରୁ ଦେଖାଯାଉଛି ଯେ ଯାତ୍ରୀଙ୍କର ସାମାଜିକ ସ୍ଥିତି, ସେମାନଙ୍କ ପାଖରେ କେତେ ଧନରତ୍ନ ଅଛି ଇତ୍ୟାଦି ସଂଗ୍ରହ କରି ଯାତ୍ରୀଙ୍କ ଅସାବଧାନତାର ସୁଯୋଗ ନେଇଥାନ୍ତି ଚୋରମାନେ । ବଡ଼ ବଡ଼ ଚୋରୀ ଏକ ସଂଘବଦ୍ଧ ଦଳଦ୍ୱାରା ଘଟିଥାଏ ।

(୨) ଗୋଟିଏ ନବଦମ୍ପତି ନିଜର ଜିନିଷପତ୍ର ରେଳ ଡବା ଭିତରେ ରଖି ବାହାରେ ଚା ପାନ କରୁଥିଲେ । ଗୋଟିଏ ଚୋର ଏକ ଭି. ଆଇ. ପି ସୁଟକେଶ ଧରି ତାଙ୍କରି ସାମନା ଦେଇ ଚାଲିଗଲା । ସ୍ତ୍ରୀ ଜଣକ ଟିକିଏ ସନ୍ଦେହ କଲେ, ସ୍ୱାମୀକୁ ତାଙ୍କ ସନ୍ଦେହର କାରଣ ବୁଝାଇଥିଲେ । ପୁରୁଷ ଜଣଙ୍କ ବେପରୱା ହିସାବରେ କହିଲେ ସେ ସୁଟକେଶ ଆମର କାହିଁକି ହେବ ? ଏପରି ସୁଟକେଶ ବଜାରରେ ବହୁତ ମିଳୁଛି । କିନ୍ତୁ ତାଙ୍କର ମନ ମାନିଲା ନାହିଁ । ନିଜ ଜିନିଷ ରଖିଥିବା ସ୍ଥାନକୁ ଗଲେ, ଦେଖିଲେ ସୁଟକେଶଟି ନାହିଁ । ଚୋର ଚୋର କହି ରେଲୱେ ଫାଟକ ଆଡ଼କୁ ଧାଇଁଗଲେ । ସେତେବେଳକୁ ଚୋର ଫାଟକ ଅତିକ୍ରମ କରିସାରିଥିଲା ଭି. ଆଇ. ପି ସୁଟକେଶ ଧରି । ଯାହାହେଉ ଭି. ଆଇ. ପି ପାଖରେ ହାଜରଥିଲା । ଘୁରିଆଡ଼େ ଦୌଡ଼ା ଦୌଡ଼ି କରିବାରୁ ସୁଟକେଶଟି ଏକ ଗଳିରାସ୍ତା ପାଖରୁ ଉଦ୍ଧାର ହେଲା । ବିରାଟ ନାଲିଆ ସୁଟକେଶକୁ ଲୋକ ଲୋଚନରୁ ଅଦୃଶ୍ୟ କରିବାର ସୁଯୋଗ ନପାଇ ଚୋରଟି ରାସ୍ତାରେ ଫିଙ୍ଗିଦେଇ ଚାଲି ଯାଇଥିଲା ।

(୩) ଚୋରମାନେ ସହଯାତ୍ରୀ ହୋଇ ବିଶ୍ୱାସ ଜନ୍ମାଇ ବିଷାକ୍ତ ବା ଅଚେତକ ଖାଦ୍ୟ ଦେଇ ଯାତ୍ରୀଙ୍କର ଜିନିଷ ହରଣଚାଳ କରନ୍ତି । ଯାତ୍ରୀଙ୍କର ମୃତ୍ୟୁ ହେବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ଅବଶ୍ୟ ଏପରି ଏକ ଚୋରଦଳ ବୈଦ୍ୟନାଥ୍ ବର୍ତ୍ତମାନ ବନ୍ଦୀଶାଳାରେ । ତେବେ ଏପରି ଲୋକଙ୍କଠାରୁ ଖାଦ୍ୟ, ପାନୀୟ, ବିଡ଼ି, ସିଗାରେଟ ଖାଇବା ଅବାଞ୍ଛନୀୟ ।

(୪) ଚୋରମାନେ ସୁନ୍ଦର ଛବିଥିବା ପତ୍ର ପତ୍ରିକା ସହଯାତ୍ରୀଙ୍କ ଆଗରେ ମେଲାଇ ଦିଅନ୍ତି । ଯାତ୍ରୀଙ୍କ ଅନ୍ୟମନସ୍କତାକୁ ଦେଖି ତାଙ୍କର ଜିନିଷ ଉଠାଇ ନିଅନ୍ତି ।

(୫) ନିକଟରେ ଘଟିଥିବା ଏକ ଘଟଣାରୁ ଜଣାଯାଇଛି ଯେ ଏକ ଡକାୟତ ଦଳ Disco dance ଏବଂ ସଙ୍ଗୀତ ଗାନକରି ଯାତ୍ରୀଙ୍କ ଜିନିଷପତ୍ର ଉଠାଇ ନେଇଥିଲେ । ଯାତ୍ରୀଙ୍କ ମନରେ ସ୍ନେହ ଶ୍ରଦ୍ଧା ଉପୁଜାଇ ପରେ ପିସ୍ତଲରୁ ଫାଙ୍କା ଆବାଜ ସୃଷ୍ଟିକରି ଡକାୟତି କରୁଥିଲେ ।

(୬) ବିଶ୍ରାମ ଗୃହ ଏବଂ ପ୍ଲାଟଫର୍ମରୁ ଏପରି ବହୁବିଧ ଉପାୟରେ ରେଳ ଯାତ୍ରୀଙ୍କ ଜିନିଷ ଚୋରମାନେ ଉଠାଇ ନିଅନ୍ତି । ସେମାନଙ୍କ ବ୍ୟଗ୍ରତାକୁ ଏବଂ ଅସାବଧାନତାକୁ ଲକ୍ଷ୍ୟ କରି ଚୋରମାନେ ତାଙ୍କର କୌଶଳ ପ୍ରୟୋଗ କରିଥାନ୍ତି । ପକେଟମାର ଘଟଣାଗୁଡ଼ିକରୁ ଲକ୍ଷ୍ୟ କରାଯାଇଛି ଯେ ଟିକେଟ ବିକ୍ରିସ୍ଥାନ, ଗାଡ଼ିରେ ଉଠିବା ବା ଓହ୍ଲାଇବା ସମୟରେ ପକେଟମାର ପାଇଁ ପ୍ରକୃଷ୍ଟ ସମୟ । ତେଣୁ ପକେଟରେ ବହୁତ ଟଙ୍କାଧରି ଭ୍ରମଣ କରିବା ଅନୁଚିତ ।

ଅପମୃତ୍ୟୁ ସମୀକ୍ଷାରୁ ଜଣାଯାଉଛି ଯେ ଚଳନ୍ତା ଗାଡ଼ିରୁ ଓହ୍ଲାଇବା ବା ଉଠିବା ସମୟରେ ଅନେକ ବ୍ୟକ୍ତି ରେଳତଳେ ପଡ଼ି ଦୁର୍ଘଟଣାର ସମ୍ମୁଖୀନ ହୋଇଥାନ୍ତି । ଦ୍ୱିତୀୟ ପରିସ୍ଥିତିଟି ହେଲା ରେଳ ଡ଼ବାରୁ ଝୁଲିକରି ଯିବା ସମୟରେ Electricity pole ସହ ଆଘାତ ପାଇ ପ୍ରାଣହରାଇବା । ତୃତୀୟ ପରିସ୍ଥିତି ଡବାରେ କବାଟ ପାଖରେ ଛିଡ଼ାହୋଇ ବାହାରର ଦୃଶ୍ୟ ଉପଭୋଗ ସମୟରେ ଗାଡ଼ିରୁ ଖସି ତଳେ ପଡ଼ିଯାଇ ପ୍ରାଣ ହରାଇବା ।

(୭) ଆଉ ଏକ ପରିସ୍ଥିତି ହେଲା ଜଗୁଆଳି ନଥିବା ଫାଟକ ଅତିକ୍ରମ କରିବା ସମୟରେ ଗାଡ଼ିର ଆଘାତରେ ପ୍ରାଣ ହରାଇବା ।

(୮) ଅନ୍ୟ ଏକ ଘଟଣା ହେଉଛି ରେଳ ଲାଇନ ଉପରେ ଯିବା ସମୟରେ ପଛରୁ ରେଳ ଧକକାରେ ପ୍ରାଣ ହରାଇବା । Turning ଏବଂ Curve ଅତିକ୍ରମ କରିବା ସମୟରେ ଏହି ପରିସ୍ଥିତି ଉପୁଜିଥାଏ । ଏପରି ଅନେକ ଦୁର୍ଘଟଣା ପ୍ରତି ଯାତ୍ରୀମାନେ ସତର୍କ ରହିଲେ ବିପଦ ଏଡ଼ାଇପାରିବେ । ସତର୍କ ରେଳ ଯାତ୍ରୀ ସମସ୍ତ ବିପଦ ଏବଂ ଦୁର୍ଘଟଣାରୁ ଯାତ୍ରୀମାନଙ୍କୁ ମୁକ୍ତ କରିଥାଏ ।

କମାଣ୍ଡାଣ୍ଡ,
ଓ. ଏସ୍. ଏ. ପି. ଫାଷ୍ଟ ବାଟାଲିୟନ୍,
ଭୁବନେଶ୍ୱର,



ହରିଜନ ଆଦିବାସୀ ସମ୍ମେଳନରେ ଉଦ୍‌ବୋଧନ

# ଆମ ଶିଳ୍ପାଞ୍ଚଳ ପରିବେଶ ଓ ଜନ ସ୍ୱାସ୍ଥ୍ୟ

ଡକ୍ଟର ବିଜୟାନନ୍ଦ ନାୟକ

ପାରିପାର୍ଶ୍ୱିକ ସ୍ୱାସ୍ଥ୍ୟହିଁ ଜନସ୍ୱାସ୍ଥ୍ୟ । ଜନସଂଖ୍ୟା ହୁ ହୁ ବଢ଼ିଚାଲିଛି । ଜନସଂଖ୍ୟା ବଢ଼ିବା ସହିତ କଳ କାରଖାନାର ଦ୍ରୁତ ପ୍ରସାର ହେଉଛି । ବିଶ୍ୱରେ ଶିଳ୍ପ କାରଖାନାର ପ୍ରସାର ଓ ନୂତନ ରାସାୟନିକ ଦ୍ରବ୍ୟର ଉତ୍ପାଦନ ଫଳରେ ଆମ ପରିବେଶ ଓ ଶିଳ୍ପାଞ୍ଚଳର ବାୟୁମଣ୍ଡଳ ଯେଉଁ ପରିମାଣରେ ଦୂଷିତ ହୋଇପଡ଼ୁଛି, ତାହା ସମଗ୍ର ମାନବ ସମାଜ ପାଇଁ ଉଦ୍‌ବେଗ ଓ ଚିନ୍ତାର କାରଣ ହୋଇ ଗଲାଣି । ତା'ଛଡ଼ା ପୃଥିବୀର ସବୁ ଦେଶରେ କିଛି ନା କିଛି ଶିଳ୍ପ ରହିଛି । ଶିଳ୍ପ ପ୍ରସାର ବ୍ୟତୀତ ମାନବ ସମାଜର ସମୃଦ୍ଧି ସମ୍ଭବ ନୁହେଁ । ଶିଳ୍ପ କାରଖାନାରୁ ନାନା ପ୍ରକାର ଅପକାରୀ ପଦାର୍ଥ ବାୟୁମଣ୍ଡଳ ତଥା ପ୍ରେକ୍ଷକୁ ଯାଇ ପ୍ରାକୃତିକ ପରିସରରେ ନାନା ପ୍ରକାର ପରିବର୍ତ୍ତନ ଘଟାଇ ଥାଏ । ଭାରସାମ୍ୟ ରକ୍ଷା କରିବା ପାଇଁ ଏ ପ୍ରକାର ଆଞ୍ଚଳିକ ପରିବର୍ତ୍ତନ ସମଗ୍ର ବିଶ୍ୱର ପରିବେଶକୁ ପ୍ରଭାବିତ କରୁଛି ଓ ଅସ୍ୱାସ୍ଥ୍ୟକର ପରିସ୍ଥିତି ସୃଷ୍ଟି କରୁଛି ।

ପୃଥିବୀର ପ୍ରାୟ ସବୁ ଶିଳ୍ପୋନ୍ନତ ଦେଶମାନଙ୍କରେ ବନ ସମ୍ପଦ ନଷ୍ଟ, ମୃତ୍ତିକା କ୍ଷୟ ଓ ପରିବେଶ ଦୂଷିତ ହେଉଛି । ତା' ସହିତ ତାଳ ରଖି ନାନା ପ୍ରକାର ଜଟିଳ ରୋଗ ସବୁ ଦେଖାଯାଉଛି । ଅରଣ୍ୟ ହ୍ରାସ ଯୋଗୁ ମୃତ୍ତିକା କ୍ଷୟ ଓ ବର୍ଷାର ଅଭାବ ଅନୁଭବ କରାଯାଉଛି । ଏହା ଦେଶର ଅର୍ଥନୀତିକୁ ପ୍ରଭାବିତ କରିଛି । ଭାରତରେ ଜଙ୍ଗଲ ସମ୍ପଦ ମଧ୍ୟ କ୍ଷିପ୍ର ଗତିରେ ହ୍ରାସ ପାଇବାକୁ ଲାଗିଛି । ଭାରତରେ ଗ୍ରୀଷ୍ମ ମଣ୍ଡଳୀୟ ବୃଷ୍ଟି ବର୍ଦ୍ଧିତ ଅରଣ୍ୟର ବିଧ୍ୱଂସ ସଂପର୍କରେ ଅନେକ ଅନୁଧ୍ୟାନ ହେଲାଣି, ଏଥିରୁ ଜଣାଯାଏ ଏପରି ଅରଣ୍ୟ ବିଧ୍ୱଂସ ଆମ ପାଇଁ ଏକ କଠୋର ପରିବେଶୀୟ ସଂକଟ ଏବଂ ଘୋର ବିପତ୍ତିର ସୂଚନା ।

କଳକାରଖାନା ଓ ବିଦ୍ୟୁତ ଉତ୍ପାଦନ କେନ୍ଦ୍ରରୁ ବାହାରୁଥିବା ଧୂଆଁ, ଅଙ୍ଗାରକାମ୍ଳ, କାର୍ବନ ମନୋକ୍ସାଇଡ, ସଲଫର ଡାଇଅକ୍ସାଇଡ ଏବଂ ନାଇଟ୍ରୋଜେନ ଅକ୍ସାଇଡ ପ୍ରଭୃତି ଦୂଷିତ ବାଷ୍ପ ସେ ଅଞ୍ଚଳର ବାୟୁମଣ୍ଡଳରେ ମିଶିଥାଏ । ତା' ଛଡ଼ା କଳକାରଖାନାରୁ ବାହାରୁ ଥିବା ଦୂଷିତ ବାଷ୍ପ, ମିଶ୍ରିତଧୂଆଁ ପ୍ରଧାନତଃ କୋଇଲା ଓ ପେଟ୍ରୋଲିୟମ ଇତ୍ୟାଦିର ଦହନ ଜାତ ଧୂଆଁ ଦ୍ୱାରା ବାୟୁମଣ୍ଡଳରେ ରାସାୟନିକ ପ୍ରକ୍ରିୟା ସୃଷ୍ଟି ହେବାରୁ ଅମ୍ଳ ସୃଷ୍ଟିହୁଏ । ଆଜିକାଲି ସବୁ ଶିଳ୍ପାଞ୍ଚଳ ଓ ତାର ଆଖପାଖରେ ଏହି ଅମ୍ଳ ମିଶା ଜଳ ବୃଷ୍ଟିହୋଇ ବହୁ ସବୁଜତା ନଷ୍ଟ କରିଦେଉଛି । ଏହି ଅମ୍ଳ ବୃଷ୍ଟି ମଧ୍ୟ ଜଳଭାଗର ଖାଦ୍ୟ ଶୃଙ୍ଖଳକୁ ବାଧାପ୍ରାପ୍ତ କରୁଛି । ଏହାଛଡ଼ା କଳକାରଖାନାରେ କାମ କରୁଥିବା ଶ୍ରମିକମାନେ ନାନାପ୍ରକାର ନୂତନ ଓ ବିଚିତ୍ର ରୋଗରେ ଆକ୍ରାନ୍ତ ହେଉଛନ୍ତି । ବିଶେଷତଃ ହୃଦରୋଗ, ଶ୍ୱାସରୋଗ ଓ ପାକଯନ୍ତ୍ରର ରୋଗରେ ଆକ୍ରାନ୍ତ ହେଉଛନ୍ତି । ଦୂଷିତ ବାୟୁ ଯୋଗୁ ଶିଳ୍ପାଞ୍ଚଳର ବହୁଲୋକ ଚକ୍ଷୁରୋଗ ଓ କର୍କଟ ରୋଗରେ ଆକ୍ରାନ୍ତ ହେଉଛନ୍ତି ।

ବାୟୁପରି ଶିଳ୍ପାଞ୍ଚଳର ଜଳ ମଧ୍ୟ ଦୂଷିତ ହେବାରେ ଲାଗିଛି । ଜଳର ବିଶୁଦ୍ଧତା ଜନସ୍ୱାସ୍ଥ୍ୟ ପାଇଁ ଅପରିହାର୍ଯ୍ୟ । କାରଖାନାରୁ ବାହାରୁଥିବା ମଇଳା ପାଣି ଓ ଅପକାରୀ ପଦାର୍ଥ ଜନସ୍ୱାସ୍ଥ୍ୟ ପାଇଁ ସବୁଠାରୁ ମାରାତ୍ମକ । ୧୯୫୦ ମସିହାରେ ଜାପାନର "ମିନିମାଟା"ଠାରେ ଏକ ପ୍ରକାର ମାରାତ୍ମକ ସ୍ନାୟବିକ ରୋଗ ଦେଖାଗଲା । ଏହା ସେଠାର ସମୁଦ୍ର ଉପକୂଳରେ ଥିବା ରାସାୟନିକ କାରଖାନାରୁ ବାହାରୁଥିବା ପାରଦ ମିଶା ଅପକାରୀ ପଦାର୍ଥରେ ମିଶି ମାଛ ଦେହରେ ସଞ୍ଚିତ ହୋଇ ରହିଛି । ଏହି ମାଛ ଖାଇ ମିନିମାଟାରେ ମତ୍ସ୍ୟଜୀବୀମାନେ ଏକ ପ୍ରକାର ବିଚିତ୍ର ରୋଗରେ ପୀଡ଼ିତ ହେଲେ । ଆଜି ବମ୍ବେ ମହାନଗରୀ ଓ ତାର ଚତୁଃପାର୍ଶ୍ୱରେ ଥିବା ସମସ୍ତ କାରଖାନାରୁ ଆବର୍ଜନା ଯାଇ କାଳୁନଦୀ ଓ ସମୁଦ୍ରରେ ମିଶୁଥିବାରୁ ଉକ୍ତନଦୀ ଓ ସମୁଦ୍ର ଜଳ ଦୂଷିତ ହେବା ସଙ୍ଗେ ସଙ୍ଗେ ସେହି ଅଞ୍ଚଳରେ ବାସ କରୁଥିବା ବହୁଲୋକ ସେ ଜଳକୁ ବ୍ୟବହାର କରି ଛାତି ଯନ୍ତ୍ରଣା, ପେଟରୋଗ ଓ ହୃଦ୍‌ରୋଗ ପ୍ରଭୃତି ନାନା ପ୍ରକାର ରୋଗ ଭୋଗ କରୁଛନ୍ତି । ଏହା ଛଡ଼ା ଓଡ଼ିଶାର ଚୌଦ୍ୱାର, ରାୟଗଡା ଓ ବ୍ରଜରାଜନଗରରେ ଥିବା କାଗଜ କଳ ଓ ଗଞ୍ଜାମର ଜୟଶ୍ରୀ କେମିକାଲସ ଦ୍ୱାରା ପ୍ରାୟ ଆମ ନଦୀର ଜଳ ଦୂଷିତ ହେଉଛି । ଏହି ଦୂଷିତ ଜଳ ବ୍ୟବହାର ଫଳରେ ଜନସାଧାରଣ ବିଭିନ୍ନ ପ୍ରକାର ରୋଗରେ ପୀଡ଼ିତ ହେଉଛନ୍ତି । ଦୂଷିତ ଜଳ ଯୋଗୁଁ ପେଟରୋଗ, ଜୀବାଣୁ ଜନିତ ଟାଇଫଏଡ, ପାରା ଟାଇଫଏଡ, ଝାଡ଼ା ଓ ଆମାଶୟ ପ୍ରଭୃତି ନାନାରୋଗ ହୁଏ । ନିକଟରେ ପଶ୍ଚିମ ବଙ୍ଗଳା ଓ ଓଡ଼ିଶାରେ ଆମାଶୟ ରୋଗ ବ୍ୟାପିବା ଦ୍ୱାରା ବହୁଲୋକ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଦୂଷିତ ଜଳ ସେବନ ଦ୍ୱାରା ଅନେକ ଗୁଡ଼ିଏ କୃମିରୋଗ ହୁଏ । ଜିଆକୃମି, ବଶିପୋକ ହୁକ୍‌ୱାର୍ମ ଓ ଗୁନିଆ ୱାର୍ମ ପ୍ରଭୃତି ହୁଏ । ଦୂଷିତ ଜଳ ଯୋଗୁ ଜୀବାଣୁ ଜନିତ କାମଳ ରୋଗ, ଯକ୍ଷ୍ମା ଓ ଅନ୍ୟାନ୍ୟ ରୋଗ ମଧ୍ୟ ହୁଏ ।

ଏ ସବୁରୁ ପ୍ରତ୍ୟୟ ହୁଏ ଯେ ଶିଳ୍ପ ପ୍ରସାର ଯୋଗୁ ପ୍ରାୟ ସବୁ ଦେଶର ପରିବେଶ ଦୂଷିତ ହେବାରେ ଲାଗିଛି ଓ ଏହା ଆନ୍ତର୍ଜାତୀୟ

ସମସ୍ୟା ହୋଇ ପଡ଼ିଛି । ଶିଳ୍ପ କାରଖାନାର ଆବର୍ଜନା ଓ କ୍ଷୟକାରକ ନିଷ୍କାସିତ ପଦାର୍ଥ ଯଦି ସେହି ଶିଳ୍ପ ପ୍ରତିଷ୍ଠାନମାନଙ୍କ ଦ୍ୱାରା ବିଶୋଧନ ଏବଂ ଉପଯୁକ୍ତ ଭାବରେ ବ୍ୟବହାର କରାନଯାଏ, ତେବେ ଶିଳ୍ପ ପ୍ରସାର ସଙ୍ଗେ ସଙ୍ଗେ ଶିଳ୍ପାଞ୍ଚଳର ପରିବେଶ ଦୂଷିତ ହୋଇ ସୁରିଆଡ଼େ ବିଶାକ୍ତ ହୋଇଯିବ । ଜନସ୍ୱାସ୍ଥ୍ୟର ଅବନତ ଘଟିବ ଓ ମାନବ ସମାଜ, ପଶୁପକ୍ଷୀ ଓ ଗଛଲତାର ବିଲୋପ ଘଟିବ । ଏହି ଭଳି ବିପଦର ଆଶଙ୍କା ହେତୁ ଆନ୍ତର୍ଜାତୀୟ ପରିବେଶ ସଂରକ୍ଷଣ ସଂସ୍ଥା ଗଠନ କରାଯାଇ ପରିବେଶ ବିଜ୍ଞାନୀମାନେ ପାରିବେଶିକ ସଂପଦର ସଂରକ୍ଷଣ ଓ ଜନସ୍ୱାସ୍ଥ୍ୟର ଉନ୍ନତି ପାଇଁ ନାନା ବ୍ୟବସ୍ଥା ଗ୍ରହଣ କରି ପୃଥିବୀରେ ଜନଜାଗରଣ ସୃଷ୍ଟି କରୁଛନ୍ତି ।

ଅଧ୍ୟାପକ, ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗ
ଗଙ୍ଗାଧର ମେହେର ମହାବିଦ୍ୟାଳୟ,
ସମ୍ବଲପୁର ।



ଖୋର୍ଦ୍ଧା ସମବାୟ ସୂତାକଳ ଉଦ୍‌ଘାଟନ ଉତ୍ସବରେ
ଶ୍ରୀ ରାଜୀବ ଗାନ୍ଧୀ

# ନାଗାନୃତ୍ୟ

ଶ୍ରୀ ଆଦିତ୍ୟ ନାରାୟଣ ମିଶ୍ର

ଓଡ଼ିଶାର କଳା ସାହିତ୍ୟ, ସଂସ୍କୃତି ଓ ଭାସ୍କର୍ଯ୍ୟ ବିଶ୍ୱ ଦରବାରରେ ଏକ ଆକର୍ଷଣୀୟ ସ୍ଥାନ ଗ୍ରହଣ କରିଛି । ଏହାର ପରଂପରା ସତ୍ୟ, ଶିବ ଓ ସୁନ୍ଦରର ଭାବ ପ୍ରକାଶରେ ସହାୟକ ହୋଇଥାଏ । ଓଡ଼ିଶାର ପୂର୍ବନାମ ଉତ୍କଳ ବା କଳିଙ୍ଗ ଥିଲା । ପୂର୍ବେ ଏହି ରାଜ୍ୟରେ ବହୁ ଲୋକନୃତ୍ୟ ରାଜାମହାରାଜାମାନଙ୍କୁ ଅତୀବ ଆକର୍ଷିତ କରିପାରିଥିଲା ।

ଏହି ଲୋକନୃତ୍ୟର ସୃଷ୍ଟି ଯେଉଁଭଳିଭାବେ ହୋଇଥାଉପଛକେ ଏହାର କମନୀୟତା ଜନମାନସରେ ଉତ୍ଫୁଲର ରେଖା ଟାଣିଥାଏ । ବିଭିନ୍ନ ଜାତି, ବର୍ଣ୍ଣ ଓ ଧର୍ମର ସୁଲିତବର୍ଣ୍ଣି, ଭାବଭଙ୍ଗୀ ଓ ପ୍ରଚଳିତ ସାମାଜିକ ରୀତିନୀତିରେ ଲୋକନୃତ୍ୟ ଗୁଡ଼ିକ ଏଭଳି ଅଙ୍ଗାଙ୍ଗୀଭାବେ ଜଡ଼ିତ ହୋଇଥାଏ ଯେ ତାହା ସେତିକି ସେତିକି ମନୋରଂଜନ ପାଇଁ ବ୍ୟବହୃତ ହୋଇଥାଏ, ସେତିକି ଆତ୍ମ ସନ୍ତୋଷ ପ୍ରଦାନ କରିଥାଏ । ରାଜ୍ୟର ପାହାଡ଼ ପର୍ବତ-ଘେରା ନିଘଞ୍ଚ ଜଙ୍ଗଲଠାରୁ ଆରମ୍ଭକରି ଶ୍ରୀ ଜଗନ୍ନାଥଙ୍କ ପାଦଦେଶ ପର୍ଯ୍ୟନ୍ତ ଅବସ୍ଥିତ ଲୋକସମାଜ ସାମାଜିକ ଓ ସାଂସ୍କୃତିକ ଭିତ୍ତିଭୂମି ଉପରେ ତୋଳିଥାନ୍ତି, ଲୋକନୃତ୍ୟର ସମ୍ଭାର । ବର୍ଣ୍ଣ ବୈଚିତ୍ର୍ୟମୟ ଓ ରଂଗରସରେ ପରିପୂର୍ଣ୍ଣ ବିଭିନ୍ନ ଉତ୍ସବାଦିଠାରୁ ଆରମ୍ଭକରି ଓଡ଼ିଶାର ବିଭିନ୍ନ ପର୍ବପର୍ବାଣୀ ପର୍ଯ୍ୟନ୍ତ ଆଦିବାସୀ, ହରିଜନ, ଗିରିଜନ କି ସବର୍ଣ୍ଣ ସମସ୍ତେ ଆନନ୍ଦରେ ଅଧୀରହୋଇ ଉଠନ୍ତି, ତାଙ୍କର ସେହି ପ୍ରିୟ ଲୋକନୃତ୍ୟରେ ଭାଗନେବାପାଇଁ । କାଳର ରଥଚକ୍ରତଳେ ମନୁଷ୍ୟ ଲୋପ ପାଉଥିଲେ ମଧ୍ୟ ଲୋକସମାଜର ବିବିଧ ବିଭାବ ଲୋକନୃତ୍ୟ ମାଧ୍ୟମରେ ଚିର ଜୀବନ୍ତ ଏବଂ ଅଧିକ ଆକର୍ଷଣୀୟ ହୋଇ ପାରିଛି । ଗତାନୁଗତିକ ଧାରାରେ ଓ ପାରମ୍ପରିକ ରୀତିରେ ଏହା ଦର୍ଶକଙ୍କ ପାଇଁ ଆନନ୍ଦଦାୟକ ହୋଇଥାଏ ।

କଳିଙ୍ଗର ଗିରିଗୁଞ୍ଜନ, ଝରଣାର ଝଙ୍କାର, ବନାନୀର କୋଳାହଳ, ନଦନଦୀର ସୁଲଳିତ କଂପନ ଭିତରେ ଭରିରହିଛି ବହୁ ହୃଦୟସ୍ପର୍ଶୀ ଆଦର୍ଶ କିମ୍ବଦନ୍ତୀ । ଏହି କିମ୍ବଦନ୍ତୀ ଆଧୁନିକ ସମାଜରେ ବହୁ ପୁରୁଣାହେଲେ ମଧ୍ୟ ଅତ୍ୟାଧୁନିକ ମାନବକୁ ଯଥେଷ୍ଟ ଶିକ୍ଷାଦିଏ ! ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ସଂସ୍କୃତି ଏତେ ବ୍ୟାପକତା ଲାଭକରିଛି ଯେ ତାହା ବିଶ୍ୱର ସାଂସ୍କୃତିକ ପ୍ରାଣରେ ସଂଜୀବନୀ ପ୍ରଦାନ କରିଥାଏ । ଆଜି ଆଗନ୍ତୁକ ବିଦେଶୀ ପର୍ଯ୍ୟଟକ ମରାଳ ମାଳିନୀ ନୀଳାମ୍ବୁ ଚିଲିକା, ସୁବର୍ଣ୍ଣ ତ୍ରିଭୁଜ, ସମ୍ବଲପୁରର ନୃସିଂହନାଥଠାରୁ ଆରମ୍ଭକରି ଶାବର କ୍ଷେତ୍ର ଶ୍ରୀ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ଏବଂ କୋଣାର୍କ ମନ୍ଦିରର ଅପୂର୍ବ ଭାସ୍କର୍ଯ୍ୟଠାରୁ ଆରମ୍ଭକରି ମନ୍ଦିରମାଳିନୀ ଭୁବନେଶ୍ୱରର ହାସ୍ୟମୟୀ ଲାସ୍ୟମୟୀ ରୂପ ଦେଖିବାବେଳେ ସ୍ୱାଭାବିକଭାବେ ଅଭିଭୂତ ହୋଇ ଉଠନ୍ତି । ଏହି ସ୍ଥାନର ଜନଜୀବନ ସହିତ ଲୋକନୃତ୍ୟ ଅନ୍ତରଂଗ ଭାବରେ ଜଡ଼ିତ ।

ଓଡ଼ିଶାର ଲୋକସଂଗୀତ ଓ ଲୋକନୃତ୍ୟମାନ ଅନ୍ୟାନ୍ୟ ଅଞ୍ଚଳର ନୃତ୍ୟମାନଙ୍କଠାରୁ ସଂପୂର୍ଣ୍ଣଭାବେ ଭିନ୍ନହୋଇ ନୂତନ-ସ୍ୱାଦ ବହନ କରିଛି । ସମାଜର ସାମୂହିକ ବିକାଶ ଓ ମାନବକୁ ସଂସ୍କୃତିପ୍ରେମୀ କରାଇବାପାଇଁ ସୃଷ୍ଟ ଏହି ଲୋକନୃତ୍ୟମାନଙ୍କର ଦେଶବିଦେଶରେ ଯଥେଷ୍ଟ ଆଦର ରହିଛି । ଉତ୍କଳୀୟ ପରଂପରା ଓ ଶ୍ରୀ ଜଗନ୍ନାଥ, ଏହି ଲୋକନୃତ୍ୟମାନଙ୍କୁ ଧର୍ମଧାରଣାରେ ସଂପୃକ୍ତ କରାଇଥାଆନ୍ତି । ଏହା ସାଧାରଣତଃ ଉତ୍କଳୀୟ ପ୍ରାଣରେ ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ବିକାଶ ଘଟାଇଥାଏ ।

ଶ୍ରୀକ୍ଷେତ୍ର ବା ପୁରୀରେ ଯେଉଁ ସବୁ ଲୋକନୃତ୍ୟମାନ ଦେଖାଯାଇଥାଏ ସେମାନଙ୍କ ମଧ୍ୟରେ ନାଗାନୃତ୍ୟ ଅଗ୍ରଗଣ୍ୟ । ବୀର ରସରେ ଶାଣିତ ଓଡ଼ିଶାର ଲୋକନୃତ୍ୟରେ ନାଗାନୃତ୍ୟର ପ୍ରାଧାନ୍ୟକୁ ଅସ୍ୱୀକାର କରାଯାଇପାରେନା । ବୀରରସ ଓ ବାଦ୍ୟରେ ପରିପୂର୍ଣ୍ଣ ଏହି ନୃତ୍ୟକୁ ସ୍ୱଚକ୍ଷୁରେ ଦେଖିଲେ ଓ ଏହି ବାଦ୍ୟର ସ୍ୱର କର୍ଣ୍ଣ ଗହ୍ୱରରେ ପ୍ରତିଧ୍ୱନିତହେଲେ, ସାଧାରଣ ଦର୍ଶକର ହୃଦୟ ସ୍ୱତଃ ବୀରରସରେ ଆପ୍ଲୁତ ହୋଇଉଠେ । ସେହିପରି ଏହି କ୍ରୀଡ଼ା ପାଇକନୃତ୍ୟ ମଧ୍ୟ ସାମରିକ ପରଂପରାର ଉଚ୍ଚ ଆଦର୍ଶ ସୃଷ୍ଟି କରିଥାଏ ।

'ନାଗା' ଏକ ବୀର ଶବ୍ଦ । ଆସାମର ପାହାଡ଼ିଆ ଅଞ୍ଚଳରେ ନାଗାନାମକ ଏକ ଆଦିବାସୀ ଜାତି ବାସ କରୁଛନ୍ତି । ଏହି ଜାତିର ଲୋକମାନଙ୍କ ନୃତ୍ୟକୁ ନାଗାନୃତ୍ୟ ବୋଲି ଅବଧାରଣା କରାଯାଉଛି । ମାତ୍ର ଓଡ଼ିଶାର ନାଗାନୃତ୍ୟ ସଂପର୍କରେ ଯଥେଷ୍ଟ ପ୍ରମାଣ ମିଳୁନଥିଲେ ମଧ୍ୟ ଜଗନ୍ନାଥ ସଂସ୍କୃତିସହ ଏହି ନୃତ୍ୟର ସଂପର୍କ ଅତି ନିବିଡ଼ । । ଏକଥା ସ୍ୱୀକାର୍ଯ୍ୟ ଯେ ଶ୍ରୀଜଗନ୍ନାଥଙ୍କ ପରଂପରା ଓ ନିତ୍ୟ କାର୍ଯ୍ୟାବଳୀରେ ନାଗାନୃତ୍ୟର ଆବଶ୍ୟକତା ରହିଛି । ଶ୍ରୀ ଜଗନ୍ନାଥଙ୍କ ବିଭିନ୍ନ ବେଶମାନଙ୍କ ମଧ୍ୟରେ

ନାଗାର୍ଜ୍ଜୁନବେଶ ପ୍ରଧାନ । ଯେଉଁ ବର୍ଷ କାର୍ତ୍ତିକମାସର ପଞ୍ଚୁକ ୫ଦିନ ପରିବର୍ତ୍ତେ ୬ଦିନହୁଏ । ସେହି ବର୍ଷ ଶ୍ରୀ ଜଗନ୍ନାଥ ନାଗାବେଶରେ ଭୂଷିତ ହୋଇଥାଆନ୍ତି ।

ପୁରୀ ଜିଲ୍ଲାର ଏହିନୃତ୍ୟ ପ୍ରାଚୀନ ଲୋକନୃତ୍ୟର ସମ୍ମାନ ଲାଭ କରିଛି । ବୀର ରସଉପରେ ଆଧାରିତ ଏହି ଲୋକନୃତ୍ୟ ଶ୍ରୀ ଜଗନ୍ନାଥଙ୍କ ପରଂପରାକୁ ସମୃଦ୍ଧ କରୁଥିବାରୁ ଏହା ନିଶ୍ଚିତରୂପେ ଓଡ଼ିଶାର ପ୍ରାଚୀନ ଲୋକନୃତ୍ୟବୋଲି ଗବେଷକ-ମାନେ କହୁଛନ୍ତି ।

ଓଡ଼ିଶାର ପ୍ରାଚୀନ ଲୋକପ୍ରଥାରୁ ଜଣାଯାଏ, ନାଗା ଏକ ସ୍ୱେଚ୍ଛାସେବୀଦଳ । ଏ ସଂପର୍କରେ ଗଭୀରଭାବେ ଅନୁଧ୍ୟାନ କଲେ ଜଣାପଡ଼େ ସାଂସ୍କୃତିକ ସଂହତିର ବିକାଶପାଇଁ ପୂର୍ବେ ଭାରତବର୍ଷର ୪ଟି ମହାନ ପୁଣ୍ୟ ତୀର୍ଥକ୍ଷେତ୍ର ପ୍ରସିଦ୍ଧି ଲାଭ କରିଥିଲା । ପଶ୍ଚିମରେ ଦ୍ୱାରିକାନାଥ, ଦକ୍ଷିଣରେ ରାମନାଥ, ଉତ୍ତରରେ ବଦ୍ରିନାଥ ଓ ପୂର୍ବରେ ଶ୍ରୀଜଗନ୍ନାଥ, ଧର୍ମ ଓ ସାଂସ୍କୃତିକ ପୀଠସ୍ଥଳୀଭାବେ ସୁବିଦିତଥିଲା । ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ମନୁଷ୍ୟ ଯାନବାହାନର ଅସୁବିଧା, ରାସ୍ତାର ଅଭାବ, ସର୍ବୋପରି ଠଗମାନଙ୍କ ଆକ୍ରମଣରୁ ରକ୍ଷାପାଇବାପାଇଁ ଏହି ନାଗାଦଳର ସାହାଯ୍ୟ ଲୋଡୁଥିଲେ । ବୀରବେଶରେ ସଜ୍ଜିତ ଓ ରାଜକୀୟ ସ୍ୱୀକୃତିପ୍ରାପ୍ତ ଏହି ନାଗାମାନେ ସ୍ୱେଚ୍ଛାସେବକରୂପେ ଯାତ୍ରୀମାନଙ୍କୁ ରାସ୍ତାପାର କରାଇ କିଛି ପାଉଣାପାଉଥିଲେ । ଭାରତବର୍ଷର ୪ଟିକ୍ଷେତ୍ର ମଧ୍ୟରେ ସମ୍ବନ୍ଧ ଦୃଢ଼ୀଭୂତ କରାଇବାରେ ନାଗାମାନଙ୍କର ଅବଦାନ ବେଶ ପ୍ରଶଂସନୀୟ ।

ଆଜିକାର ବେଶଭୂଷା ଓ ପରିପାଟୀ ତଥା ତତ୍‌କାଳୀନ ନାଗାମାନଙ୍କର କାର୍ଯ୍ୟ ସଂପର୍କରେ ଅନୁଧ୍ୟାନକଲେ ଜଣାଯାଏ, ନାଗାମାନଙ୍କର କାର୍ଯ୍ୟ ସାଧାରଣତଃ ତିନୋଟିଭାଗରେ ବିଭକ୍ତ କରାଯାଇଥିଲା । ସେଗୁଡ଼ିକହେଲା (i) Physical Culture (ଶରୀର ସଂଗଠନ), (ii) Protection (ନିରାପତ୍ତା) (iii) Profate Religion (ଧର୍ମପ୍ରଚାର) । ରାଜାମହାରାଜାମାନେ ନାଗାମାନଙ୍କ ପ୍ରତି ସଦୟ ଥିବାର ଅନୁମାନ କରାଯାଏ । କାରଣ ରାଜ୍ୟର ମୁଖ୍ୟ ତିନୋଟି ଦାୟିତ୍ୱ ଏମାନେ ବହନ କରୁଥିବାରୁ ଓ ବିଶେଷତଃ ନିରାପତ୍ତା ପ୍ରତି ଦୃଷ୍ଟି ଦେଉଥିବାରୁ ଏମାନଙ୍କପ୍ରତି ଶାସକଗୋଷ୍ଠୀ ସମ୍ବେଦନଶୀଳ ଥିଲେ । ଏମାନଙ୍କ ଶାରୀରିକ ଗଠନ ବେଶ ଆକର୍ଷଣୀୟ ଥିଲା । ଧର୍ମଧାରଣା ସଂପୃକ୍ତ ପାରଂପରିକ ଉତ୍ସବ ଓ ଧର୍ମାନୁଷ୍ଠାନ ସହିତ ଦୀର୍ଘଦିନର ସଂପର୍କହେତୁ ଲୋକନୃତ୍ୟଗୁଡ଼ିକ ଦେବଦେବୀଙ୍କ ଆରାଧନାପାଇଁ ଉଦ୍ଦିଷ୍ଟ । କ୍ରମେ ଏହାକୁ ମନୋରଂଜନ ଓ ଚିତ୍ତବିନୋଦନ ନିମନ୍ତେ ନିୟୋଜିତ କରାଗଲା ।

ପୁରୀ ସଦର ସବଡିଭିଜନ, ବିଶେଷତଃ ସାକ୍ଷୀଗୋପାଳ ଅଞ୍ଚଳରେ ଏହି ଲୋକନୃତ୍ୟ ବ୍ୟାପକ ଭାବେ ଦେଖାଯାଏ । ଏହି ଜିଲ୍ଲାରେ ମେଲଣ, ସାହିଯାତ୍ରା, ଶୋଭାଯାତ୍ରା ଏତେ ବ୍ୟାପକ ଭାବେ ଅନୁଷ୍ଠିତ ହୁଏ ଯେ କିଛି ଯାତ୍ରା ନଥିଲେ ବି ନାଗାନୃତ୍ୟ ନିଶ୍ଚିତ ରୂପେ ଥିବ, ଏଥିରେ ସନ୍ଦେହ ନାହିଁ ।

ବିଶେଷତଃ ଫଗୁଦଶମୀଠାରୁ ଚନ୍ଦନଯାତ୍ରା ଶେଷ ପର୍ଯ୍ୟନ୍ତ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଏହି ନୃତ୍ୟ ବହୁ ସଂଖ୍ୟାରେ ଅନୁଷ୍ଠିତ ହୁଏ । ପୁରୀ ସନ୍ନିକଟ ୧୬ ଶାସନ, ୩୨ କରବାଡ଼ ଓ ବହୁ ଛୋଟ ଛୋଟ ବସ୍ତିମାନଙ୍କରେ ପ୍ରଚଳିତ ବିଭିନ୍ନ ପର୍ବପର୍ବାଣୀରେ ନାଗା ଯାତ୍ରା, ସାହିଯାତ୍ରା ଓ ମେଢ଼ନୃତ୍ୟ ପରିବେଷଣ କରାଯାଇଥିବାର ଦେଖାଯାଏ । ବଳିଷ୍ଠ ଶରୀରରେ ଆନୁସଙ୍ଗିକ ଗରିଷ୍ଠ ପୋଷାକ ପରିଧାନ କରି ସମଗ୍ର ଉତ୍ସବ ପରିସର ମଧ୍ୟରେ ନୃତ୍ୟଶିଳ୍ପୀ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିଥାଏ । ଛୋଟ ଛୋଟ ପିଲାମାନେ ଏହି ବାଦ୍ୟର ସ୍ୱର ସହିତ ନାଗାକୁ ଦେଖି ଶଙ୍କିତ ଦୃଷ୍ଟିରେ ବୀରତ୍ୱର ମହିମା ଅନ୍ୱେଷଣକରୁଥାଆନ୍ତି । ଶାରୀରିକ ଶିକ୍ଷାପାଇଁ ଏହା ଏକ ଉପଯୁକ୍ତ ମାଧ୍ୟମ । ବୀରତ୍ୱ ଓ ପୌରୁଷର ଶକ୍ତିଶାଳୀ ପ୍ରତୀକ ବହନ କରି ନାଗାନୃତ୍ୟ ଆଜି ବିଶ୍ୱ ଦରବାରରେ ଆକର୍ଷଣୀୟ ସ୍ଥାନ ଗ୍ରହଣ କରିବାକୁ ଯାଉଛି । Processional Colourful Dance (ରଙ୍ଗୀନ ଶୋଭାଯାତ୍ରା ନାଚ) ହିସାବରେ ଏହାର ସ୍ଥାନ ସ୍ୱତନ୍ତ୍ର ଓ ଏହା ବେଶ ଉପଭୋଗ୍ୟ ।

ନାଗାନୃତ୍ୟ ଶିଳ୍ପୀ ପରିଧାନ କରିଥିବା ସମସ୍ତ ବେଶଭୂଷା ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଥିବା ଏକ ରାଜକୀୟ ସେନାପତିର ବେଶଭୂଷା ସହ ସମାନ । ଏହାର ସମସ୍ତ ବେଶ ଓ ଆନୁସଙ୍ଗିକ ବ୍ୟବସ୍ଥା ସ୍ୱ ନିରାପତ୍ତା ପାଇଁ ଆବଶ୍ୟକ । ଯେତେ ବିପତ୍ତି ଆସିଲେ ମଧ୍ୟ ତାର ବେଶଭୂଷା, ପରିପାଟୀ ସମସ୍ତ ବିପଦକୁ ପ୍ରତିହତ କରିବା ପାଇଁ ସର୍ବଦା ଜାଗ୍ରତ ଥାଏ । ସମଗ୍ର ବକ୍ଷରେ ଆଚ୍ଛାଦନ ହୋଇଥାଏ ଏକ ବ୍ୟାଘ୍ର ଚର୍ମ । ଗୋଟିଏ ବ୍ୟାଘ୍ରର ସଂପୂର୍ଣ୍ଣ ଛାଲଟି ବେକ ତଳ ଠାରୁ ଅଣ୍ଟା ପର୍ଯ୍ୟନ୍ତ ଆଚ୍ଛାଦନ କରାଯିବା ଦ୍ୱାରା ଏହା ବକ୍ଷଦେଶକୁ ସୁଶୋଭିତ କରିବା ସଙ୍ଗେ ସଙ୍ଗେ ସ୍ୱ ନିରାପତ୍ତା ରକ୍ଷା କରି ପାରିଥାଏ । ସେହି ଭଳି ପୃଷ୍ଠଭାଗରେ ନାଗାଡାଟି ଉପରେ ଥାଏ, ଗଣ୍ଡା ଢାଲ । ତାହା ଏହିଭଳି ଶକ୍ତ ଯେ ସେଥିରେ ଅସ୍ତ୍ରଶସ୍ତ୍ର ଭେଦ କରିବା କଷ୍ଟ । ପଛପଟେ ଧେନୁଟି ଆକର୍ଷଣୀୟ ଭାବେ ରଖା ଯାଇଥାଏ । ଏହି ଧେନୁରେ ଯେଉଁ ରଙ୍ଗ ବେରଙ୍ଗ କାଠି ଖଞ୍ଜା ଯାଇଥାଏ ତାକୁ କାଣ୍ଡିଅ କୁହାଯାଏ । ଧେନୁକୁ ଧନୁ ଓ କାଣ୍ଡଆକୁ ଶର ଆଖ୍ୟା ଦିଆଯାଇଥାଏ । ପୂର୍ବକାଳରେ ଆବଶ୍ୟକ ପଡ଼ିଲା ବେଳେ ଧନୁ ଦ୍ୱାରା ନାଗା ଶତ୍ରୁ ପକ୍ଷକୁ ଶର ନିକ୍ଷେପ କରୁଥିଲା । ମୁଖରେ ନିଶ, ଦାଢ଼ି, ଜଟା ଏବଂ ମୁଣ୍ଡ ଉପରେ ଏକ ଗୋଲାକାର ସୋଲ ନିର୍ମିତ ଫୁଲ ଆଭରଣ କରିଥାଏ । ଏହାକୁ ହାଣ୍ଡିଆ କୁହାଯାଏ । ହାଣ୍ଡିଆ ଏତେ ଶକ୍ତ ହୋଇଥାଏ ଯେ ଏହାକୁ ଠେଙ୍ଗା, ଖଣ୍ଡା, ତୀର, ବର୍ଚ୍ଛା ପ୍ରଭୃତି ଅସ୍ତ୍ର ଭେଦ କରିବା ସଂପୂର୍ଣ୍ଣ କଷ୍ଟ । ଏଣୁ ମସ୍ତକଭାଗ ସହଜରେ ରକ୍ଷା ପାଇବାରୁ ଶେଷ ପର୍ଯ୍ୟନ୍ତ ଶତ୍ରୁପକ୍ଷ ସହ ଲଢ଼ିବା ପାଇଁ ନାଗା ସଂପୂର୍ଣ୍ଣ ସକ୍ଷମ ହୋଇପାରିଥାଏ । କାଳକ୍ରମେ ଏହା ଲୋକନୃତ୍ୟରେ ପରିଣତ ହୋଇଥିବାରୁ ନାଗାର ହାଣ୍ଡିଆରେ ଉତ୍କୃଷ୍ଟ ରୌପ୍ୟ ଖଚିତ କାରୁକାର୍ଯ୍ୟ ଖଞ୍ଜାଯିବାର ଦୃଷ୍ଟାନ୍ତ ରହିଛି । କେତେକ ସ୍ଥାନରେ ସୁବର୍ଣ୍ଣ ଓ ଜରିର ସୂକ୍ଷ୍ମ କାରୁକାର୍ଯ୍ୟ ଅଳଙ୍କାରମାନ ମଧ୍ୟ ଏହି ହାଣ୍ଡିଆରେ ଶୋଭା ପାଇଥାଏ । ନାଗାର ନାକରେ ଲମ୍ବା ସିନ୍ଦୁରକଳି ଏବଂ କେଣ୍ଡା ଫୁଲ ଦର୍ଶକ-ମାନଙ୍କ ପାଇଁ ଆକର୍ଷଣୀୟ ପରିବେଶ ସୃଷ୍ଟି କରି ପାରିଥାଏ ।

ନାଗାନୃତ୍ୟ ଶିଳ୍ପୀର ବାହୁରେ ଏରାପକ୍ଷୀ ତିଆରି କଳିଙ୍ଗ ଶୋଭପାଏ । ଏହି କଳିଙ୍ଗ ମଧ୍ୟରେ ଦର୍ପଣ ସ୍ଥାନ ପାଇଥାଏ ।

ଏରାପଷାର ରଙ୍ଗ ଗୋଲାପୀ । ଗୋଲକାର କଳିଙ୍ଗ ମଧ୍ୟରେ ଗୋଲକାର ଦର୍ପଣ ସ୍ଥାପିତ ହୋଇ ବାହୁ ଯୁଗଳରେ ରଖା ଯିବା ଦ୍ୱାରା ଏବଂ ଧେନୁର ବି ଦୁଇ ପାର୍ଶ୍ୱରେ ମଧ୍ୟ ଦୁଇଟି କଳିଙ୍ଗ ଖଞ୍ଜାଯିବା ଦ୍ୱାରା ଏହା ଅତୀବ ଆକର୍ଷଣୀୟ ହୋଇଥାଏ । ପ୍ରତ୍ୟେକ ଶିଳ୍ପୀ ହାତରେ ୩ ହାତ ଲେଖାଏଁ ୬ ହାତ ଲମ୍ବା ନିର୍ମିତ ରୁମାଲ ପିନ୍ଧାଇ ଦିଆଯାଇଥାଏ । ତାର ନିମ୍ନ ଭାଗରେ ହତା ଦିଆଯାଇଥାଏ । ଗଳାରେ ସୁନା ଓ ପୋହଳା ନିର୍ମିତ ବାଘନଖର ଲକେଟ ଏବଂ ରୁଦ୍ରାକ୍ଷ ମାଳି, ବାହୁରେ ବାହୁଟୀ ସମଗ୍ର ଶରୀରକୁ ମନଲୋଭା କରିଥାଏ । ଡାହାଣ ଗୋଡ଼ରେ ରୁପା ଶିକୁଳି ଏବଂ ନଳି ଗୋଡ଼ ତଳକୁ କଳା ବାଳରେ ବନ୍ଧା ଚଉଁରୀ ନାଗାଙ୍କର ଭୂଷଣ ରୂପେ ଗଣ୍ୟ ହୋଇଥାଏ । ଏହାର ବାକି ଥିବା ଶରୀରର ଅନ୍ୟାନ୍ୟ ଅଙ୍ଗର ଉଜ୍ଜ୍ୱଳତା ପ୍ରକାଶ ପାଇବା ପାଇଁ ଈଷତ ହଳଦୀ ରଙ୍ଗର ଏକ ଗୁଣ୍ଡ, ରାମରଜକୁ ପାଣିରେ ଗୋଳାଯାଇ ବୋଳା ଯାଇଥାଏ । ଅଣ୍ଟାରେ କମରପଟି ସହ ପାଟମଠାର କୁମ୍ଭପକା ବସ୍ତ୍ର କୁଞ୍ଚନରଂଗୀରେ ନାଗାଶିଳ୍ପୀକୁ ପିନ୍ଧାଇ ଦିଆଯାଇଥାଏ । ଗୋଡ଼ରେ ଜାନୁ ଘଣ୍ଟି ଓ ପଛ ପାର୍ଶ୍ୱରେ ଧେନୁ ଘଣ୍ଟି ସ୍ୱରରେ ବହୁ ଦୂରରୁ ନାଗା ଆସୁଥିବାର ଜାଣି ହୁଏ । ବିଭିନ୍ନ ପ୍ରକାରର ୧୬ଟି ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ନାଗା ନୃତ୍ୟ ଶିଳ୍ପୀକୁ ଯେ କୌଣସ ବ୍ୟକ୍ତ ଏକାକୀ ଦେଖା ପାଇଲେ ମନରେ ଭୟ ସୃଷ୍ଟି ହେବା ସ୍ୱାଭାବିକ । ଏହି ୧୬ଟି ଅସ୍ତ୍ରଶସ୍ତ୍ର ହେଲା ବାଙ୍କଛୁରୀ, ଢଙ୍ଗିଢ଼ାଲ, ତରବାରୀ, ଠେଙ୍ଗା, ବନ୍ଧୁକ, ଚକ୍ର, ମୁଦଗର, ନିଶାନ, ସିଙ୍ଗଡ଼ା, ଉଞ୍ଜଳଦାନୀ, ହୁନା, ଗଣ୍ଡାଢ଼ାଲ, ବର୍ଛା, କଟାରୀ, ଧନୁଶର ଓ ଚୁଟ । ସମସ୍ତ ଆଭରଣ ସଂଯୁକ୍ତ ହୋଇ ସାରିବା ପରେ ନାଗା ଶିଳ୍ପୀର ଗୋଡ଼ ନାଚିବା ପାଇଁ ଆପେ ଆପେ ଉଠିଥାଏ । ଗୁଙ୍ଗୁ ଏହି ନାଚର ପ୍ରଧାନ ବାଦ୍ୟ ଯନ୍ତ୍ର । ମାତ୍ର କେତେକ ସ୍ଥାନରେ ଗୁଙ୍ଗୁ ସହ ମଧ୍ୟ ମହୁରୀର ବ୍ୟବହାର ପରିଲକ୍ଷିତ ହୁଏ । ଏହି ନାଚର ସ୍ୱର ଡାକ୍, ଢ଼ାଢେଙ୍କ ଢାଢ଼େଢ଼ାରେ ଆରମ୍ଭ ହୁଏ । ଏହି ନୃତ୍ୟର ୧୬ ଘଗିକିଆ ନାଚ ଅତୀବ ଚମତ୍କାର । ଶୋଭାଯାତ୍ରାମାନଙ୍କରେ ନାଚି ନାଚି ନାଗାମାନେ ଗଲବେଳେ ମନ ଭିତରେ ସ୍ୱତଃ ଶିହରଣ ଜାଗି ଉଠେ । ଏହି ବାଦ୍ୟର ଟେଂପୋ ପ୍ରଥମରୁ ଧୀର ଓ ଧୀରରୁ ପ୍ରଖର ହୋଇଥାଏ । ଏହି ନୃତ୍ୟ ଶିଳ୍ପୀମାନେ ପ୍ରାୟ ୧ କୁଇଣ୍ଟାଲ ଓଜନର ସାମଗ୍ରୀ ପରିଧାନ କରି ନାଚୁ ଥାଆନ୍ତି । ତେଣୁ ଏଭଳି ନାଚ ପାଇଁ ଯେ କୌଣସି ବ୍ୟକ୍ତି ପୌରୁଷ ଓ ବାହାଦୁରୀ ନେବା ସ୍ୱାଭାବିକ ।

ଆଜିକାଲି ନାଗାନୃତ୍ୟ ସେହିଭଳି ଅବସ୍ଥାରେ ରହିଛି । ଗାଁ ଗହଳିରେ ଏହି ନୃତ୍ୟ ପାଇଁ ଠାକୁରାଣୀଙ୍କ ନିକଟରେ ଯାଚେଙ୍ଗା ଥାଏ । କଥିତ ଅଛି, ଯେଉଁ ସନ୍ତାନମାନେ ମୃତ୍ୟୁ ମୁଖରେ ପଡ଼ନ୍ତି, ତାଙ୍କର ପିତାମାତା ଠାକୁରାଣୀଙ୍କୁ ପ୍ରାର୍ଥନା କରି କହନ୍ତି "ମା ମୋ ପୁଅ ତୋ ପର୍ବ ପର୍ବାଣୀରେ ନାଗା ହେବ, ତାକୁ ବଞ୍ଚାଇଦେ", ପ୍ରାପ୍ତ ବୟସ ହେବା ପରେ ଆବଶ୍ୟକୀୟ ଭୋଗ ସାମଗ୍ରୀ ଠାକୁରାଣୀଙ୍କୁ ଅର୍ପଣ କରି ନାଗାଶିଳ୍ପୀମାନେ ନୃତ୍ୟ ପାଇଁ ପ୍ରସ୍ତୁତ ହୁଅନ୍ତି ।

ବର୍ତ୍ତମାନ ଏକ ହିସାବରୁ ଜଣା ପଡ଼ିଛି ଯେ ଗୋଟିଏ ନାଗାର ବେଶ ପୋଷାକ ପାଇଁ ଅନ୍ୟୁନ ୧୫ ହଜାର ଟଙ୍କାର ଆବଶ୍ୟକତା ରହିଛି । ବର୍ତ୍ତମାନ ସରକାର କଳା ଓ ସଂସ୍କୃତି କ୍ଷେତ୍ରରେ ପ୍ରଭୂତ ବିକାଶ ପାଇଁ ଉଦ୍ୟମ କରୁଛନ୍ତି । ନୃତ୍ୟଶିଳ୍ପୀମାନଙ୍କୁ ପେନସନ ପ୍ରଦାନ କରିବା, ବୃତ୍ତିଦେବା, ଏବଂ ଆର୍ଥିକ ସାହାଯ୍ୟ ପ୍ରଦାନ କରିବା ଓ ପ୍ରଚାର ପ୍ରଦାନ କରିବା ଆଦି ଉଦ୍ୟମ ପ୍ରଶଂସନୀୟ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଲୋକନୃତ୍ୟଗୁଡ଼ିକର ବିକାଶ ପାଇଁ ଆଶାନୁରୂପକ ଉଦ୍ୟମ କରିବେ ବୋଲି ବିଶ୍ୱାସ ।

ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟ ଓ ମୟୂରଭଞ୍ଜ ଛଉ ନୃତ୍ୟ ତାଲିମକେନ୍ଦ୍ର ଭଳି ରାଜ୍ୟରେ ଆହୁରି ଅଧିକ ଲୋକନୃତ୍ୟ ଶିକ୍ଷାକେନ୍ଦ୍ରମାନ ପ୍ରତିଷ୍ଠା କରାଯିବା ଦରକାର । ସରକାରଙ୍କ ବିନା ପୃଷ୍ଠପୋଷକତାରେ କଳା, ସାହିତ୍ୟ, ସଂସ୍କୃତିର ବିକାଶ କଦାପି ସମ୍ଭବ ନୁହେଁ । ଗତ ଏସୀୟ କ୍ରୀଡ଼ା ପ୍ରତିଯୋଗିତା ବେଳେ ଓଡ଼ିଶାର ବିଶିଷ୍ଟ ଲୋକନୃତ୍ୟ ଘୁମୁରାନୃତ୍ୟ ପରିବେଷଣ କରାଯାଇଥିଲା । ପ୍ରତ୍ୟେକ ବର୍ଷ ଜାନୁଆରୀ ୨୬ ସାଧାରଣତନ୍ତ୍ର ଦିବସ ଉତ୍ସବରେ ବିଭିନ୍ନ ରାଜ୍ୟର ଲୋକନୃତ୍ୟମାନ ଦିଲ୍ଲୀର ରାଜକିଲ୍ଲାରେ ପରିବେଷଣ କରାଯାଇଥାଏ । ଚଳିତବର୍ଷ ଏହି ଦିବସରେ ନାଗାନୃତ୍ୟ ପରିବେଷଣ କରାଇବାପାଇଁ ରାଜ୍ୟ ସରକାର ସୁପାରିଶ କରିଥିବା ଜଣାଯାଏ ।

ସଭାପତି,
କଳିଙ୍ଗ ଲୋକନୃତ୍ୟ ପରିଷଦ
ଶିରିପୁର, ଭୁବନେଶ୍ୱର

ଭାରତରେ ନିଜର ଗୌରବୋଜ୍ଜ୍ୱଳ ସ୍ଥାନ ଅଧିକାର କରିବା—ଏହାହିଁ ଓଡ଼ିଶାର ଲକ୍ଷ୍ୟ, ଭବିଷ୍ୟ ଓ ଅଭିପ୍ରେତ । ଏଥିପାଇଁ ଓଡ଼ିଶାର ଇତିହାସ, ସଂସ୍କୃତି ଓ ପରମ୍ପରା ନୂତନ ଭାବରେ ଆଲୋଚିତ ହେବା ଆବଶ୍ୟକ । ଯେଉଁସବୁ ଗୁଣ ବା ବୈଶିଷ୍ଟ୍ୟ ଏ ଜାତିକୁ ଅତୀତରେ ମହାନ୍ କରିଥିଲା, ତାର ପୁନରୁଦ୍‌ବୋଧନ ଆବଶ୍ୟକ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**

# ଯୌତୁକ ଓ ଆମ ସମାଜ

ଜ୍ୟୋତ୍ସ୍ନା ରାଉତରାୟ

ଆଜି ଯେ କୌଣସି ଝିଅଟିଏ ବିବାହର ସ୍ୱପ୍ନ ଦେଖିବା ପୂର୍ବରୁ ପ୍ରଥମେ ଚିନ୍ତା କରୁଛି ତାର ସ୍ୱପ୍ନ ଭାଙ୍ଗି ଧୂଳିସାତ୍ ହୋଇ ଯିବନି ତ ! କାରଣ 'ଯୌତୁକ'ର ଧରାବନ୍ଧା ନୀତି ନିୟମରେ ସାମାନ୍ୟ ଏପଟ ସେପଟ ହେଲେ ଝିଅଟି ଶିକ୍ଷିତା ହେଉ ବା ଅଶିକ୍ଷିତା ହେଉ ଅତି ଦୟନୀୟ ଭାବରେ ପ୍ରାଣ ହରାଉଛି । ପ୍ରତିଦିନର ସମ୍ବାଦପତ୍ରର ଶିରୋନାମାରେ କେତେ ଯେ ସୁନ୍ଦରୀ ଯୁବତୀ ଯୌତୁକର ଶିକାର ହେଉଛନ୍ତି ଓ ଅକାଳରେ ଝରି ପଡୁଛନ୍ତି ତାହା ଆମେ ସମସ୍ତେ ଦେଖୁଛୁ, ଶୁଣୁଛୁ ଓ ପଢୁଛୁ । ଏହି ମୃତ୍ୟୁ ପୁଣି ସ୍ୱାଭାବିକ ନୁହେଁ । ଅତି ବିଭତ୍ସ ଭାବରେ ଶ୍ୱଶୁର ଘରର ଲୋକମାନେ ବୋହୂଟିକୁ ହତ୍ୟା କରୁଛନ୍ତି । କିରୋସିନି ଢାଳି ନିଆଁ ଲଗାଇ, ବିଷ ଦେଇ, ତଣ୍ଟିଚିପି ଏହି ନରପଶୁମାନେ ସାମାନ୍ୟ ଅର୍ଥ ଲୋଭରେ ନିର୍ଦ୍ଦୋଷ ପ୍ରାଣୀଟିକୁ ହତ୍ୟା କରୁଛନ୍ତି । ସେତେବେଳେ ସେମାନେ ଚିନ୍ତା କରୁନାହାନ୍ତି ଯେ, ସେହି ଝିଅଟି ଆଉ କାହାର କନ୍ୟା, ଆଉ କାହାର ଭଗିନୀ ହୋଇଥିବ ଓ ତାହାର ଏହି ଶୋଚନୀୟ ଅକାଳ ମୃତ୍ୟୁରେ ସେମାନଙ୍କ ମନରେ କି ଦାରୁଣ ଆଘାତ ଲାଗିବ ।

ଆଜି ଯଦି ଆମେ ସମସ୍ତେ ନିଜକୁ ପ୍ରଶ୍ନ କରୁ ଯେ ଏଥିପାଇଁ ଦାୟୀ କିଏ, ତେବେ ଉତ୍ତର ହେବ ଆମେ ସମସ୍ତେ । କାରଣ ଯୌତୁକ ଆମେ ନେଉଛୁ ଓ ଆମେ ହିଁ ଦେଉଛୁ । ତେବେ ଯୌତୁକ ବିରୁଦ୍ଧରେ ଆମେ ଶତ ସ୍ଲୋଗାନ ଦେଲେ ଶୁଣିବାର ଲୋକ କିଏ ?

ଭାରତୀୟ ସମାଜ ପାଇଁ ଯୌତୁକ ଶବ୍ଦଟି ନୂଆ ନୁହେଁ, ଏହାର ପରମ୍ପରା ବହୁ ପୁରାତନ । ପୁରୁଣା କାଳରୁ ଝିଅ ବିବାହ ସମୟରେ ତାର ବାପା ମା ଝିଅକୁ ଉପହାର ସ୍ୱରୂପ ଓ ନିଜର ପଦ ମର୍ଯ୍ୟାଦା ଅନୁସାରେ ଧନରତ୍ନ, ଅଳଙ୍କାର ବ... ହାତୀ ଘୋଡ଼ା ପ୍ରଦାନ କରୁଥିଲେ । ଅନ୍ୟ ପକ୍ଷରେ ଅ... ବୟସରେ ବିବାହ କରୁଥିବା ନିଜର ଅନଭିଜ୍ଞ କନ୍ୟାର ନୂଆ... ଶ୍ୱଶୁରାଳୟରେ ପ୍ରାଥମିକ ପର୍ଯ୍ୟାୟରେ କୌଣସି ଅସୁବିଧା ନ... ହେବାପାଇଁ କେତେକ ବ୍ୟବହାର୍ଯ୍ୟ ଜିନିଷ ଓ ସାଜସଜ୍ଜା ପାଇଁ ଅଳଙ୍କାର, ଶାଢ଼ୀ ପ୍ରଭୃତି ପ୍ରଦାନ କରୁଥିଲେ । ଏହାଥି... ପିତାମାତାଙ୍କର ସନ୍ତାନପ୍ରୀତି ବା ବାତ୍ସଲ୍ୟ ସ୍ନେହର ଦା... କିମ୍ବା ଉପହାର । କିନ୍ତୁ ଏହା ବର୍ତ୍ତମାନ ଦାବୀ ଓ ଅଧିକାରରେ ପରିଣତ ହୋଇଯାଇଛି ।

ପୂର୍ବେ କନ୍ୟାପିତା ନିଜ ଇଚ୍ଛାରେ ଯୌତୁକ ଦେଉଥି... କିନ୍ତୁ ଏବେ ସେ ଯୌତୁକ ଦେବାକୁ ବାଧ୍ୟ, ନ ହେ... ବିବାହ ଅସମ୍ଭବ । ଆଜି ଯୌତୁକ ଦେବା ବାଧ୍ୟତା... ମୂଳକ ।

ଅର୍ଥାତ୍ ଆଇ. ଏ. ଏସ୍. ପାତ୍ର ହେଲେ ନଗଦ......ହଜା... ଇଞ୍ଜିନିୟର ହେଲେ ...... ହଜାର, ଡ଼ାକ୍ତର ହେଲେ ...... ହଜାର, କିରାନୀ ହେଲେ ଏତିକି ଭରି ସୁନା ଓ ସ୍କୁଟର ଏପରି... ଗୋଟିଏ ପିଅନ ପାତ୍ରର ମୁଣ୍ଡପିଛା କେତେ ଯୌତୁକ ତା... ମଧ୍ୟ ଧାର୍ଯ୍ୟ ହୋଇ ରହିଯାଇଛି । ଏହି ଯୌତୁକର ପ୍ରଭା... ମଧ୍ୟଯୁଗ ପରେ ପରେ ବିସ୍ତାର ଲାଭ କରିଛି ଏବଂ ସ୍ୱାଧୀନତା... ପରବର୍ତ୍ତୀ ଭାରତୀୟ ସମାଜରେ ଦିନକୁ ଦିନ ଏତେ ପ୍ରବ... ହୋଇ ପଡିଛି ଯେ, ବର୍ତ୍ତମାନ ଝିଅମାନେ ଦୁଇଗୁଣ ଯୌତୁ... ନେଇ ମଧ୍ୟ ନିଜର ଜୀବନକୁ ନିରାପଦ ମଣୁ ନାହାନ୍ତି । ... ବିବାହିତା ବଧୂଟିର ଜୀବନରେ ସାଧାରଣ ପାରିବାରିକ ଅଶା... ସହିତ ଯୌତୁକର ଯନ୍ତ୍ରଣା ମଧ୍ୟ ଆରମ୍ଭ ହୋଇଯାଏ ... ଅନେକ ସ୍ଥାନରେ ଯୌତୁକ ପାଇଁ ବର ବେଦୀରୁ ଉଠି ପ... ଯାଉଛି । ମଙ୍ଗୁଳା କନ୍ୟାଟିର ଯନ୍ତ୍ରଣା ଓ ତାର ପି... ମାତାଙ୍କର ଆକୁଳତା ଦେଖିଲେ ସମବେଦନାରେ ହୃଦ... ଧରିତ୍ରୀ ବିଦୀର୍ଣ୍ଣ ହୋଇଯାଇ ପାରେ କିନ୍ତୁ ମଣିଷର ମନ ଟଳ... ପାରୁନାହିଁ । ଯା'ଠାରୁ ବଳି ଯୁଗଯନ୍ତ୍ରଣା ଆଉ ... ଥାଇପାରେ ।

ବର୍ତ୍ତମାନ ଆମ ଭାରତୀୟ ସମାଜରେ ଯୌତୁକ ନେବା... ଏକ ସଂକ୍ରାମକ ବ୍ୟାଧିରେ ପରିଣତ ହୋଇ ଯାଇଛି । ପଡ଼ି... ଘରର ପୁଅଟି ଯଦି ସ୍କୁଟର, ଏତେ ଭରି ସୁନା, ଟି. ଭି. ଆ... ପାଇଲା ତେବେ ମୁଁ ବା ମୋର ପୁଅ କ'ଣ ଅକ୍ଷମ, ଅପାତ୍ର ... ତା'ଠାରୁ ଅଧିକ ଯୌତୁକ ଆଣି ପାରିବୁ ନାହିଁ । ଏହା ହେ... ଆମ ସମାଜର ତଥାକଥିତ ଶିକ୍ଷିତ ସଭ୍ୟ ମଣିଷମାନ... ବିକୃତ ପରିକଳ୍ପନା ଓ ଲୋଲୁପ ମନୋଭାବ । ଆମର ସମା... ବର୍ତ୍ତମାନ ବୈଜ୍ଞାନିକ ପ୍ରଗତି ସହିତ ଯୌତୁକ ପଛରେ ଛୁ... ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯୌତୁକର ନିର୍ଦ୍ଧାରି... ପାତ୍ର ଅପାତ୍ରର ବିଚାର ନାହିଁ । ଯୋଗ୍ୟତା ପ୍ରତି ମଧ୍ୟ କେ... ଲକ୍ଷ୍ୟ ରଖୁ ନାହାନ୍ତି । ଚରିତ୍ରକୁ କେହି ଦେଖୁ ନାହାନ୍ତି... ସମସ୍ତେ କହୁଛନ୍ତି ବିବାହ ପରେ ବଜାରରେ ମାନ ... ବଜାୟ ରଖିବା ପାଇଁ ଆମର ଯୌତୁକ ଦରକାର । ...

ଶିକ୍ଷିତ ଯୁବକ ଓ ତାଙ୍କର ସମ୍ଭ୍ରାନ୍ତ ପିତା ମାତା ଅଭିଭାବକମାନଙ୍କର ଏହି ସମ୍ମାନହାନି ଓ ହୀନ ମନୋବୃତ୍ତି ଯେ କୌଣସି ସଭ୍ୟ ସମାଜରେ ବିରଳ ।

ଅନ୍ୟ ଦୃଷ୍ଟିରୁ ଯୌତୁକ କ୍ଷେତ୍ରରେ ଝିଅଟି କେତେ ପରିମାଣରେ ଦୋଷୀ ତାହା ମଧ୍ୟ ଥରେ ଚିନ୍ତା କରିବା ଦରକାର । ପିତାମାତା ବା ଅଭିଭାବକମାନେ ତାର ବିବାହ ଠିକ କରନ୍ତି । ଝିଅଟି ପାଇଁ ଭଲ ପାତ୍ରଟିଏ ପାଇବା ପାଇଁ ଲାଳାୟିତ ହୋଇ ଚଢ଼ା ଯୌତୁକ ଦେବା ପାଇଁ ନିଜର ଅକ୍ଷମତା ସତ୍ୱେ ପ୍ରତିଶ୍ରୁତି ଦେଇ ଦିଅନ୍ତି । କିନ୍ତୁ ଠିକ୍ ସମୟରେ ହୁଏତ ତାହା ସମ୍ଭବ ହୋଇ ପାରେନା । ବରବେଦୀରୁ ଫେରିଯାଏ, ନ ହେଲେ 'ଔଷଧ ରାଗରେ ତାଟିଆ କାମୁଡ଼ିଲେ' ପରି ବୋହୂଟି ଉପରେ ଘୃଲେ ଅକଥ୍ୟ ଅତ୍ୟାଚାର । ଅଥଚ ସେ ସଂପୂର୍ଣ୍ଣ ନିରପରାଧ । ଶ୍ୱଶୁର ଘରର ଲୋକମାନେ ଥରେ ହେଲେ ବୁଝନ୍ତି ନାହିଁ ଯେ ଯୌତୁକ ଦେବାର କୌଣସି ପ୍ରତିଶ୍ରୁତି ଝିଅଟି ଦେଇ ନ ଥିଲା । କିନ୍ତୁ ସେ ନିର୍ଯ୍ୟାତନା ଭୋଗେ ଓ ଶେଷରେ ମରଣକୁ ବରଣ କରେ । ଏହିପରି ଅସଂଖ୍ୟ ଅମାନୁଷିକ ଅବିବେକୀ ଉଦାହରଣ ଆଜି ଆମ ଦେଶର ପ୍ରତି ଗ୍ରାମ, ପ୍ରତି ଜିଲ୍ଲା, ସହର ଓ ରାଜ୍ୟରେ ଦେଖାଯାଉଛି ଓ ସଂଖ୍ୟାରେ ପ୍ରତିଦିନ ବୃଦ୍ଧି ପାଇବାରେ ଲାଗିଛି ।

ଏକ ସମୀକ୍ଷାରୁ ଜଣାପଡିଛି ଯେ, ରାଜଧାନୀ ଦିଲ୍ଲୀରେ ଏହି ଯୌତୁକ ପାଇଁ ହତ୍ୟା ଓ ଆତ୍ମହତ୍ୟାର ସଂଖ୍ୟା ସର୍ବାଧିକ । ଏହା ପରେ ପରେ ରହିଛି ଉତ୍ତର ପ୍ରଦେଶ ଓ ରାଜସ୍ଥାନ, ଯେଉଁଠାରେ ଯୌତୁକଜନିତ ହତ୍ୟା ବା ମୃତ୍ୟୁ ଘଟଣା ବହୁ ଗୁଣରେ ବଢ଼ି ଚାଲିଛି । ଆମ ଓଡ଼ିଶାରେ ବଡ଼ ବଡ଼ ସହର ଅର୍ଥାତ୍ ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲାରେ ଯୌତୁକ ମୃତ୍ୟୁ ସର୍ବାଧିକ । ପ୍ରତିଦିନର ଦୈନିକ ଓଡ଼ିଆ ସମ୍ବାଦପତ୍ରରେ ଯେଉଁ ସମ୍ବାଦମାନ ବାହାରୁଛି ତାହାକୁ ବିଚାର କଲେ ଜଣାଯାଏ ଯେ, ଓଡ଼ିଶାରେ ଯୌତୁକଜନିତ ମୃତ୍ୟୁ ସଂଖ୍ୟା ଦିନକୁ ଦିନ ପ୍ରାୟ ବୃଦ୍ଧି ପାଇବାରେ ଲାଗିଛି । ତେଣୁ ଆମର ଓଡ଼ିଶାରେ ଦରିଦ୍ର ଲୋକଙ୍କର ସଂଖ୍ୟା ଅଧିକ ହେଲେ ମଧ୍ୟ ଯୌତୁକ ନେବାରେ ଯେ ଆମେ ଅଗ୍ରଗଣ୍ୟ ହୋଇ ପାରିଛୁ ତାହା ନିଶ୍ଚିତ ଭାବେ ଚିନ୍ତାର ବିଷୟ । ବିବାହିତା ଓଡ଼ିଆ ବୋହୂମାନେ ଶାଶୁଘରର ଜଞ୍ଜାଳ ଅତ୍ୟାଚାର ସହି ନ ପାରି ଆତ୍ମହତ୍ୟାର ପଥ ବାଛି ନେଉଛନ୍ତି, ନ ହେଲେ ସେମାନଙ୍କୁ ଆକ୍ରୋଶରେ ପୋଡି କିମ୍ବା ବିଷ ଦେଇ ମାରି ଦିଅନ୍ତି । ସବୁଠାରୁ ଦୁଃଖଦାୟକ ହେଉଛି ଯୌତୁକ ମୃତ୍ୟୁ ବା ହତ୍ୟାପାଇଁ ଦାୟୀ ସ୍ୱାମୀ, ଯେଉଁ ମଣିଷଟିକୁ ମଣ୍ଡପଠାରେ ଦଶଦିଗପାଳ ଓ ଶାଳଗ୍ରାମ ଶିଳାକୁ ସାକ୍ଷୀ ରଖି ଝିଅଟି ତା ଜୀବନର ଏକାନ୍ତ ଆପଣାର ସାଥୀ ଭାବରେ ବାଛି ନେଇଥାଏ । ବୋହୂଟିକୁ ମାରିଦେଇ ବା ତାର ମୃତ୍ୟୁର କାରଣ ହୋଇ ନିଷ୍ଠୁର ସ୍ୱାମୀ ପୁଣି ଥରେ ବିବାହ କରେ । ଏହିପରି ଉଦାହରଣ ଆଜି ଆମ ସମାଜରେ ଅସଂଖ୍ୟ ।

ଏହି କଳଙ୍କିତ ପ୍ରଥାର ବିଲୋପ ପାଇଁ ଲୋକସଭା ଓ ରାଜ୍ୟସଭାରେ ଅନେକ ତର୍କ ବିତର୍କ ହୋଇଛି, । ୧୯୬୧ ମସିହାରେ 'ଯୌତୁକ ନିରୋଧ ଆଇନ' ପ୍ରଣୟନ ହୋଇଥିଲା । କିନ୍ତୁ ଏହାଯେ କାର୍ଯ୍ୟକାରୀ ହୋଇଛି ତାହା କେଉଁଠି ହେଲେ ଦେଖାଯାଉନାହିଁ । ଏହାର ଏକମାତ୍ର କାରଣ କୌଣସି ଆଇନ କାନୁନ ଏପରି ଏକ ସାମାଜିକ ବ୍ୟାଧିକୁ ଦୂର କରିପାରିବ ନାହିଁ । ଏଥିପାଇଁ ଦରକାର ଜନଚେତନା ଓ ଦୃଢ଼ ଜନମତ । ଯେଉଁମାନେ ବକ୍ଷ ବିଦାରେ ଲେଜରେ ଯୌତୁକ ବିରୁଦ୍ଧରେ ସଭା ସମିତିରେ ଓଜସ୍ୱିନୀ ବକ୍ତୃତା ଦିଅନ୍ତି ସେମାନେ ପୁଣି ସଂଧ୍ୟାର ନିଅନ ଆଲୁଅ ତଳେ ଇଞ୍ଜିନିୟର ବା ଆଇ. ଏ. ଏସ. ଜୋଇଁ ହାତରେ ଟଙ୍କାର ଥଳି ଟେକିଦିଅନ୍ତି । ସ୍ୱାମୀ ଯେତେ ଅପଦାର୍ଥ, ମଦ୍ୟପ ଓ ଉଚ୍ଛୃଙ୍ଖଳ, ଉପାର୍ଜନ ଅକ୍ଷମ ହେଲେ ମଧ୍ୟ କନ୍ୟାଘର ତରଫରୁ ତାକୁ କିଛି ଶାସ୍ତି ଦିଆଯାଏନାହିଁ, ତେବେ ସାମାନ୍ୟ ଧନପାଇଁ ଗୋଟିଏ ନିରୀହ ଜୀବନକୁ ନିଃଶେଷ କରିଦେବାରେ ଯଥାର୍ଥତା କେଉଁଠି ?

ଦିନଥିଲା ଯେତେବେଳେ ସ୍ୱାମୀର ଚିତାଗ୍ନିରେ 'ସତୀ' ହେବାପାଇଁ ପତ୍ନୀ ଆତ୍ମବିସର୍ଜନ କରୁଥିଲା । ଅନେକ ଅଳ୍ପ ବୟସା ସ୍ତ୍ରୀ ଲୋକର ଅନିଚ୍ଛା ଥିଲେ ସେମାନେ ବାଧ୍ୟହୋଇ ସ୍ୱାମୀର ଚିତାଗ୍ନିରେ ଝାସ ଦେଉଥିଲେ । ରାଜା ରାମମୋହନ ରାୟ, ବିଦ୍ୟାସାଗର ପ୍ରଭୃତି ସମାଜ ସଂସ୍କାରକମାନଙ୍କର ଅକ୍ଲାନ୍ତ ପରିଶ୍ରମ ଓ ସାମାଜିକ ଆନ୍ଦୋଳନ ଫଳରେ ଏହି ଅମାନୁଷିକ ପ୍ରଥା ଲୋପ ପାଇଲା । ଲୋକମାନେ ବୁଝିପାରିଲେ 'ସତୀ' ହେବାପାଇଁ ଅନିଚ୍ଛା ସତ୍ୱେ ଗୋଟିଏ ମଣିଷକୁ ପୋଡ଼ିଦେବା ମହାପାପ, ନୃଶଂସ ହତ୍ୟା । କିନ୍ତୁ ଆଜି........ନିଜେ ସ୍ୱାମୀ ନିରପରାଧ ସ୍ତ୍ରୀକୁ ପୋଡ଼ି ମାରି ଦେଉଛି । ସ୍ୱାମୀର ଚିତା ବଦଳରେ ସ୍ୱାମୀ ଗୃହରେ ହିଁ ଅଗ୍ନି ଦାହ ହୋଇ ମୃତ୍ୟୁ ବରଣ କରୁଛି । ତେବେ ବର୍ତ୍ତମାନ କଣ ଆମ ସମାଜରେ ଜଣେ ହେଲେ ବିଦ୍ୟାସାଗର ବା ରାମମୋହନ ନାହାନ୍ତି ? ନିତିଦିନ ଅସଂଖ୍ୟ ଅନୂଢ଼ା ଝିଅ ବିବାହ ନାମକ ମଧୁର ସ୍ୱପ୍ନ ପାଇଁ ପ୍ରତୀକ୍ଷା କରିବା ବଦଳରେ କଣ କେବଳ ଦୁଃସ୍ୱପ୍ନ ଭିତରେ ଅତିବାହିତ କରିବେ ? ଏହାର ଉତ୍ତର ଆଜି ଏ ଦେଶର ବହୁ ଶିକ୍ଷିତା ଯୁବତୀଙ୍କ ଆତ୍ମା ଭିତରେ ହିଁ ରହିଛି । କେବଳ ତାହାର ପ୍ରକାଶ ଦରକାର । ସେମାନେ କଣ ସମବେତ ଭାବରେ 'ବିବାହ ବର୍ଜନ' ଆନ୍ଦୋଳନରେ ବ୍ରତୀ ହୋଇ ପାରିବେ ନାହିଁ । ଏ ପ୍ରସଙ୍ଗରେ ମହାତ୍ମାଗାନ୍ଧୀ ଥରେ କନ୍ୟାମାନଙ୍କୁ ଉପଦେଶ ଦେଇଥିଲେ ଯେ, ଯଦି ସେମାନେ ବିବାହ ବନ୍ଧନରେ ଆବଦ୍ଧ ହେବାକୁ ଦୃଢ଼ ଭାବରେ ଅସ୍ୱୀକାର କରନ୍ତି ତେବେ ସମାଜର ଅବସ୍ଥା କଣହେବ ? ଯୌତୁକ ଦାବୀଦାରମାନେ ବଧୂ ଅନ୍ୱେଷଣରେ ଅନ୍ୟ କେଉଁ ଦେଶକୁ ଯିବେ । ପ୍ରତିଟି ଶିକ୍ଷିତା ତରୁଣୀ ଥରେ ଚିନ୍ତା କରନ୍ତୁ ସେମାନେ ହୁଏତ ମୋଟା ଅଙ୍କର ଯୌତୁକ ଦେଇ ଜଣେ ବିଦେଶ ଫେରନ୍ତା, ଆଇ, ଏ. ଏସ୍. ବା ଡାକ୍ତରଙ୍କୁ ବିବାହ କରିପାରନ୍ତି କିନ୍ତୁ ଅନ୍ୟ ଦିଗରେ ଠିକ୍‌ରୂପେ ଯୌତୁକ ଦେଇ ନପାରି ତାଙ୍କରି ପରି ଯେଉଁ ଫୁଲଟି ଅକାଳରେ ଝରିଗଲା ତା' ପାଇଁ କଣ ସେମାନଙ୍କର କୌଣସି କର୍ତ୍ତବ୍ୟ ନାହିଁ ବା ସେମାନେ କଣ ଦାୟୀନୁହନ୍ତି ? ପ୍ରଚୁର ଯୌତୁକ ଦେଇ ସେମାନେ କଣ ଲୋଲୁପ ସ୍ୱାମୀ, ଶ୍ୱଶୁର ବା ଶାଶୁଙ୍କୁ ସନ୍ତୁଷ୍ଟ କରିପାରିବେ ? ପ୍ରତିମା' ମାନେ ଥରେ ଚିନ୍ତାକରି ଦେଖନ୍ତୁ ଗୁଡ଼ାଏ ଯୌତୁକ ଦେଇ ଝିଅର ବୋଝ ଲାଘବ ପାଇଁ ବା "ଅଭିଆଡ଼ି" ଦୋଷରୁ ମୁକ୍ତ କରିବା ପାଇଁ ସେମାନେ ଯେଉଁ ଅମଣିଷ ପାଖରେ ସନ୍ତାନକୁ ବିକ୍ରି କରିଛନ୍ତି ତାର ଫଳାଫଳ କଣ ଦିନେ ଭୟାବହ ହେବନାହିଁ ?

ଆଧୁନିକ ଶିକ୍ଷାଦୀକ୍ଷାରେ ମାର୍ଜିତ ଯୁବକମାନଙ୍କୁ ମଧ୍ୟ ଏଠାରେ ଗୋଟିଏ ପ୍ରଶ୍ନ—ଯୌତୁକ ପାଇଁ ନିଜର ସୁଖ ଦୁଃଖର ସଙ୍ଗିନୀକୁ

ଜୀବନ୍ତ ହତ୍ୟା କରିବା କଣ ବହୁଦିନ ପୂର୍ବେ ଯୁକ୍ତରାଷ୍ଟ୍ର ଆମେରିକାରେ 'ନିଗ୍ରୋ'ମାନଙ୍କୁ ଜୀଅନ୍ତା ପୋଡ଼ି ମାରିବା ସହିତ ସମାନ ନୁହେଁ ? ଆମେରିକାରେ ଗଣଚେତନା ଓ ଆନ୍ଦୋଳନ ଦ୍ୱାରା ଏହି ଜଘନ୍ୟ ପ୍ରଥାର ଲୋପ ହୋଇ ସାରିଛି କିନ୍ତୁ ଭାରତୀୟ ସମାଜରେ 'ଯୌତୁକ ହତ୍ୟା'ର କଣ ଶେଷନାହିଁ ।

ଗତ କିଛି ବର୍ଷ ତଳେ ଯୌତୁକ ବିରୁଦ୍ଧରେ ସଭା ସମିତିରେ ବହୁ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଏପରିକି ଅନେକ ଯୁବକ ଯୁବତୀ ମଧ୍ୟ ବିନା ଯୌତୁକରେ ବିବାହ ପାଇଁ ଶପଥ ପତ୍ରରେ ସ୍ୱାକ୍ଷର କରିଥିଲେ । କିନ୍ତୁ ତାହା ବର୍ତ୍ତମାନ କେତେଦୂର କାର୍ଯ୍ୟକାରୀ ହୋଇଛି ସମସ୍ତେ ହୃଦୟଙ୍ଗମ କରି ପାରୁଥିବେ ।

ଯଦି ରାଜ୍ୟ ଓ କେନ୍ଦ୍ର ସରକାର ମିଳିତ ପ୍ରଚେଷ୍ଟାରେ ଜିଲ୍ଲା ସ୍ତରରେ ଏପରି ଏକ ସଂସ୍ଥା ଗଠନ କରନ୍ତେ, ଯେଉଁଠାରେ କି ସମସ୍ତ ବିବାହ ଉତ୍ସବ ଅନୁଷ୍ଠିତ ହୁଅନ୍ତା ଓ ଉଭୟ ପକ୍ଷର ମୁଖ୍ୟ କର୍ତ୍ତାଙ୍କର ନାମ ରହନ୍ତା, ଏହାର ମୂଳ ଉଦ୍ଦେଶ୍ୟ ହୁଅନ୍ତା ଯୌତୁକ ନିରୋଧ । ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ବର କନ୍ୟାଙ୍କର ପିତା ମାତା ଯୌତୁକ ଦେଉଛନ୍ତି କିମ୍ବା ନେଉଛନ୍ତି କି ନାହିଁ ପୁଙ୍ଖାନୁପୁଙ୍ଖ ଭାବରେ ତଦାରଖ କରାଯିବା ସମେତ ଏଥିଲାଗି ଦାୟୀ ହେଉଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରଯାନ୍ତା ତେବେ ବୋଧ ହୁଏ ଯୌତୁକ ଏତେ ଭୟାବହ ନହୋଇ ପୁଣି ଏକ ଉପହାରରେ ପରିଣତ ହୁଅନ୍ତା । ଅଭିଭାବକମାନେ ନିଜର ମନ ମୁତାବକ ସ୍ୱଇଚ୍ଛାରେ କିଛି ଦେଇପାରନ୍ତେ ଏବଂ ଏଥିରେ କୌଣସି ବାଧ୍ୟ ବାଧକତା ରହନ୍ତା ନାହିଁ, ପୁଣି ସବୁ ସ୍ୱାମୀ ରାମ ଓ ସବୁ ସ୍ତ୍ରୀ ସୀତା ହୋଇ ପାରନ୍ତେ ।

ଯୌତୁକ ପ୍ରଥାର ସଂପୂର୍ଣ୍ଣ ବିଲୋପ ସାଧନ ପାଇଁ ଝିଅମାନେ ପ୍ରଥମେ ଏକ ଅଗ୍ନିଗର୍ଭ ଆନ୍ଦୋଳନର ସୂତ୍ରପାତ କରିବା ଉଚିତ । ସେମାନେ ପଣ କରିବେ "ଯିଏ ଯୌତୁକ ନେବ, ସେ ଯେତେ ଶିକ୍ଷିତ ଓ ଉଚ୍ଚପଦସ୍ଥ ହେଉନା କାହିଁକି ଆମେ ତାକୁ ବିବାହ କରିବୁ ନାହିଁ ଓ ଯିଏ ଯୌତୁକ ନେବନାହିଁ ସିଏ କିରାନୀଟିଏ ହେଉପଛେ ତାକୁ ଆମେ ଜୀବନ ସାଥୀ ଭାବରେ ବାଛି ନେବୁ" । ଏହିଧରଣର ପଣ ଯଦି ପ୍ରତି ଗାଁ ଗଣ୍ଡା ଓ ସହରରେ ଝିଅମାନଙ୍କ ମନରେ ପ୍ରସାରିତ ହୋଇଯାଏ ତେବେ ଯୌତୁକ ଦାବୀଦାରମାନେ ଉପଯୁକ୍ତ ଶିକ୍ଷା ପାଇବେ ତଥା ଏହି କଳଙ୍କିତ ଅଧ୍ୟାୟର ସମାପ୍ତି ଘଟିବ। ପ୍ରତ୍ୟେକ ଝିଅ ବିବାହ ପୂର୍ବରୁ ଥରେ ମାତ୍ର ଅନୁଭବ କରିବା ଉଚିତ, ଜଣେ ଅମଣିଷ ନିକଟରେ ଯୌତୁକ ପାଇଁ ବିକ୍ରୀହେବାଠାରୁ ଅନୁଢ଼ା ହୋଇ ରହିବା ଶତଗୁଣେ ଶ୍ରେୟ ।

ସର୍ବ ଶେଷରେ ଯେଉଁ ଯୁବବନ୍ଧୁମାନେ ଯୌତୁକ ବିନିମୟରେ ବିବାହ କରୁଛନ୍ତି, ସେମାନେ ଥରେ ଚିନ୍ତାକରି ଦେଖନ୍ତୁ, ଭବିଷ୍ୟତରେ ସେମାନେ ବି ଦିନେ କନ୍ୟାର ଜନକ ହେବେ । ସେମାନେ ଯଦି ଏହି ପ୍ରଥାକୁ ପ୍ରଶ୍ରୟ ଦେଇ ଗୋଟାଏ "ମହୀରୂହ"ରେ ପରିଣତ କରନ୍ତି ତେବେ ତାର ଫଳାଫଳ କଣ ତାଙ୍କରି କନ୍ୟା ଦିନେ ଭୋଗ କରିବେ ନାହିଁ ? ତା'ଛଡ଼ା ଜଣେ ଶିକ୍ଷିତ ବ୍ୟକ୍ତିର ଭାବମୂର୍ତ୍ତି ଓ ଆଦର୍ଶ ଏହି ହୀନମନ୍ୟତା ଦ୍ୱାରା କଣ ଖଣ୍ଡିତ ହେଉନାହିଁ ? ସମସ୍ତ ଦେଶ ଓ ଜାତିର ଆଦର୍ଶକୁ କଣ କଳଙ୍କିତ କରୁନାହିଁ ? ତେବେ ସେ ଉଚ୍ଚ ଶିକ୍ଷାର ମୂଲ୍ୟକଣ ?

ମାର୍ଫତ୍ ଡ଼ି. ସି. ପଟ୍ଟନାୟକ
କାପଡ଼ ଫାର୍ଣ୍ଣ
ଗୁଡ଼ିନୀଚୌକ, କଟକ-୨



୮୬ ତମ ଜନ୍ମ ବାର୍ଷିକୀ ଉତ୍ସବରେ ମୁଖ୍ୟମନ୍ତ୍ରୀଙ୍କ ଡ. ମହତାବଙ୍କୁ ସମ୍ବର୍ଦ୍ଧନା ।

# ଜେଲ ବିଭାଗର ପ୍ରୋବେଶନ ହଷ୍ଟେଲ

ଶ୍ରୀ ଉଦୟ ନାଥ ରଥ

ଜେଲ ବିଭାଗର ପ୍ରୋବେସନ୍ ହଷ୍ଟେଲ ଅନଗୁଳର ସହରାଞ୍ଚଳରେ ଅବସ୍ଥିତ । ଏହା ୧୯୭୧ ମସିହାରୁ ସ୍ଥାପିତ ହୋଇଛି । ସର୍ବସାଧାରଣ ଏହାକୁ ସାନ ଜେଲ ବୋଲି ଜାଣନ୍ତି । କାରଣ ଏଠାରେ ଏକ କିଶୋର କାରାଗାର ଅଛି । ଲୋକମାନେ ତେଣୁ କିଶୋର କାରାଗାରକୁ ବଡ଼ ଜେଲ ଏବଂ ପ୍ରୋବେଶନ ହଷ୍ଟେଲକୁ ସାନ ଜେଲ ବୋଲି କହନ୍ତି । ଏପରି କି କୌଣସି ନବାଗତ ଜେଲ ନାମ ଧରଲେ ରିକ୍ସାବାଲା ପଚ୍ଛରେ, ବଡ଼ ଜେଲକୁ ଯିବ ନା ସାନ ଜେଲକୁ ଯିବ ? ଅନୁଗୁଳର କିଶୋର କାରାଗାର ଏବଂ ପ୍ରୋବେଶନ ହଷ୍ଟେଲ ମଧ୍ୟରେ ଆକାଶ ପାତାଳ ଫରକ । କିଶୋର କାରାଗାରର ନିୟମ କାନୁନରେ ବହୁ କଟକଣା ଥାଏ । କିନ୍ତୁ ପ୍ରୋବେଶନ ହଷ୍ଟେଲର ଜୀବନଯାପନ ସଂପୂର୍ଣ୍ଣ ଛାତ୍ରାବାସପରି ଗଠନମୂଳକ । ଏହା ଏକ ସଂଶୋଧନାଗାର । ଏଥିରେ ଗଢ଼ା ହେଉଥିବା ପିଲମାନେ ଅଳ୍ପ ବୟସ୍କ । ସାଧାରଣତଃ ୨୧ ବର୍ଷରୁ କମ୍ ବୟସର ପିଲମାନେ ଏଥିରେ ସ୍ଥାନ ପାଉଥାନ୍ତି । ଏହି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ ହେଲା ବିପଥଗାମୀ ପିଲମାନଙ୍କୁ ସତ୍‌ପଥର ପଥିକ କରି ସେମାନଙ୍କୁ ସମାଜରେ ଥଇଥାନ କରିବା । ଯେଉଁମାନେ ସଙ୍ଗ ଦୋଷରୁ, ପିତୃମାତୃହୀନତା ନେଇ କିମ୍ବା ଅନ୍ୟ କୌଣସି ପାରିବାରିକ ଦୋଷରୁ ଅସାମାଜିକ କାର୍ଯ୍ୟ କରନ୍ତି, ସେହିମାନେ ହିଁ ଏଠାକୁ ଆସନ୍ତି । ନ୍ୟାୟାଳୟର ନିର୍ଦ୍ଦେଶ ଅନୁସାରେ ନିର୍ଦ୍ଦିଷ୍ଟ ସମୟ ପାଇଁ ଏମାନଙ୍କୁ ଏହି ପ୍ରୋବେଶନ ହଷ୍ଟେଲରେ ରହିବାକୁ ପଡ଼ିଥାଏ । ଏହି ନିର୍ଦ୍ଦିଷ୍ଟ କାଳ ମଧ୍ୟରେ ସେମାନଙ୍କୁ ଶିକ୍ଷାଦାନ, ବୈଷୟିକ ବିଦ୍ୟା ଓ ନୀତି ଶିକ୍ଷା ଦ୍ୱାରା ସଂସ୍କାରମୂଳକ ପଦ୍ଧତିରେ ସଂଶୋଧନ କରିବାକୁ ପଡ଼ିଥାଏ ।

ଆମ ଷ୍ଟେଟର ସଂପ୍ରତି ସଂଶୋଧନମୂଳକ ପଦ୍ଧତି ତିନୋଟି ସୋପାନ ଉପରେ ଆଧାରିତ । ଅପରାଧୀର ପ୍ରାଗ୍‌ଦାୟିତ୍ୱ (Pre care), ଦାୟିତ୍ୱ (Care) ଏବଂ ଉତ୍ତର ଦାୟିତ୍ୱ (After Care) ନେବାକୁ ପଡ଼ିଥାଏ । କୌଣସ ବାଳକ ଅପରାଧ କଲେ ତାକୁ ପୋଲିସ ଜେଲକୁ ପଠେଇ ଦିଅନ୍ତି । ଜେଲଖାନାର ତତ୍ତ୍ୱ ବିଧାୟକ ପ୍ରୋବେଶନ ଅଫିସରଙ୍କୁ ଖବର ଦେଲେ ସେ ଅପରାଧୀର ଭଲମନ୍ଦ ବିଷୟରେ ନ୍ୟାୟାଳୟକୁ ଜଣେଇ ନ୍ୟାୟାଳୟର ଆଦେଶାନୁଯାୟୀ ତାକୁ ନିର୍ଦ୍ଦିଷ୍ଟ କାଳ ପାଇଁ ନିଜ ଦାୟିତ୍ୱରେ ଅପରାଧୀର ଘରେ ରଖନ୍ତି କିମ୍ବା ପ୍ରୋବେଶନ ହଷ୍ଟେଲକୁ ପଠେଇ ଦିଅନ୍ତି । ସବୁ ବାଳ ଅପରାଧୀମାନେ ଯେ ଏଠାରେ ସ୍ଥାନ ପାଆନ୍ତି ତାହା ନୁହେଁ । ଯେଉଁମାନେ ପ୍ରଥମ ଥର ପାଇଁ ଦୋଷ କରିଥାଆନ୍ତି ଏବଂ ସେମାନଙ୍କର ଦୋଷ ହତ୍ୟା କିମ୍ବା ଡକାୟତିପରି ଗୁରୁତର ଅପରାଧ ନୁହେଁ, ସେହିମାନେ ହିଁ ପ୍ରୋବେଶନ ହଷ୍ଟେଲରେ ସ୍ଥାନ ପାଇ ଥାଆନ୍ତି । ଅନ୍ୟମାନଙ୍କ ପାଇଁ ନ୍ୟାୟାଳୟ ଦଣ୍ଡ ବିଧାନକଲେ ସେମାନେ ଜେଲକୁ ଆସନ୍ତି । ସେ ଜେଲରେ ସେମାନଙ୍କର ଦାୟିତ୍ୱ ବହନ କରାଯାଏ । ସେ ସଜା ଭୋଗ କରି ମୁକ୍ତ ହେଲେ ମୁକ୍ତ ବନ୍ଦୀ ଶିବିରର କାର୍ଯ୍ୟନିର୍ବାହୀ ତାର ଉତ୍ତର ଦାୟିତ୍ୱ ନେଇ ସମାଜରେ ଥଇଥାନ ପାଇଁ ବନ୍ଦୋବସ୍ତ କରନ୍ତି ।

ସଂଶୋଧନମୂଳକ ପଦ୍ଧତିର ଦ୍ୱିତୀୟ ସୋପାନରେ ବାଳ ଅପରାଧୀମାନେ ଏହି ପ୍ରୋବେଶନ ହଷ୍ଟେଲରେ ସଂଶୋଧିତ ହୁଅନ୍ତି । ସେମାନଙ୍କର ବସବାସ, ଖାଦ୍ୟପେୟ ଓ ପରିଧେୟର ସମସ୍ତ ଖର୍ଚ୍ଚ ସରକାର ବହନ କରନ୍ତି । କୌଣସି ନବାଗତ ବାଳାପରାଧୀ ଆସିଲାମାତ୍ରେ ଅନ୍ୟ ପିଲମାନେ ତାକୁ ସ୍ୱାଗତ ଜଣେଇ ହାତଧରି ତୁଣ୍ଢେଇ ନେଇ ଆସନ୍ତି । ଛୋଟ ପିଲ— ସେ ପଥଶ୍ରାନ୍ତ, ପିତାମାତା ସ୍ନେହରୁ ବଞ୍ଚିତ, ଚିନ୍ତିତ ଓ ଭୟଭୀତ ହୋଇଥାଏ । ସମବୟସ ପିଲମାନଙ୍କର ସହାନୁଭୂତି ପାଇ ସେ ସବୁ ମିଳେଇଯାଏ ଏବଂ ସଙ୍ଗେ ସଙ୍ଗେ ସେ ଗୋଲାପୀ ହସ ହସି ନିଜ ଅନ୍ତରକୁ ଅନ୍ୟମାନଙ୍କ ସହିତ ମିଶାଇ ଦିଏ ।

ଏହାର ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟ ହସଖେଳ ପରିବେଶ ଭିତରେ ପ୍ରତିପାଳିତ ହୋଇଥାଏ । ଏମାନଙ୍କର ଶୟନ କକ୍ଷ ବିଦ୍ୟୁତ ଆଲୋକରେ ସଜ୍ଜିତ । ଶୋଇବା ପାଇଁ ଖଟ, ମଶାରୀ, ତକିଆ, ଦରି ଓ ବିଛଣା ଚଦର ଯୋଗାଇ ଦିଆଯାଇଥାଏ । ପ୍ରତ୍ୟୁଷରୁ ଏମାନେ ଶଯ୍ୟା ତ୍ୟାଗ କରି ପ୍ରଭାତକାଳୀନ ପ୍ରାର୍ଥନା କରନ୍ତି । ତାପରେ ଶୌଚାଦି କାର୍ଯ୍ୟ ସାରି ହାପ୍ ପ୍ୟାଣ୍ଟ ଏବଂ ହାପ୍ ସାର୍ଟ ପିନ୍ଧି ୩୦ ମିନିଟ ପର୍ଯ୍ୟନ୍ତ ଡ୍ରିଲ୍ କରନ୍ତି । ଡ୍ରିଲ୍‌ପରେ ଏମାନଙ୍କର ସ୍ୱଳ୍ପକ୍ଷଣ ବିଶ୍ରାମ, ସ୍ନାନ ଓ ପ୍ରାତଃ ଭୋଜନ, ଶିକ୍ଷାଦାନ ସମସ୍ତଙ୍କ ପାଇଁ ବାଧ୍ୟତାମୂଳକ । ତେଣୁ ଶ୍ରେଣୀ ବିଭାଗ ଅନୁସାରେ ହଷ୍ଟେଲ ଭିତରେ ଥିବା ବିଦ୍ୟାଳୟରେ ସମସ୍ତେ ବିଦ୍ୟା ଶିକ୍ଷା କରନ୍ତି । ବିଦ୍ୟାଳୟରେ ବିଦ୍ୟା ଶିକ୍ଷା ସାଧାରଣତଃ ୮ଟା ଠାରୁ ୧୧ଟା ପର୍ଯ୍ୟନ୍ତ ହୋଇଥାଏ । ବିଦ୍ୟା ଶିକ୍ଷାପରେ ସେମାନଙ୍କର ମଧ୍ୟାହ୍ନ

ଭୋଜନ ସାରି ସମସ୍ତେ ଏକ ଘଣ୍ଟା ବିଶ୍ରାମ କରନ୍ତି ଏବଂ ପାରସ୍ପରିକ ଅତୀତ ଭବିଷ୍ୟତ କଥାରେ ମଜ୍ଜି ଯାଆନ୍ତି । ଦୁଇଟା ବେଳୁ ସେମାନଙ୍କର ଦରଜୀ କାମ ଆରମ୍ଭ ହୁଏ । ଏହି ଦରଜୀ ଶିକ୍ଷା ଦେବାରେ ସୁଦକ୍ଷ କର୍ମୀ ନିଯୁକ୍ତ ପାଇଛନ୍ତି । ପିଲାମାନେ କାଜ ସିଲାଇଠାରୁ ଆରମ୍ଭ କରି ନିଜ ହାତରେ ପ୍ୟାଣ୍ଟ୍ ସାର୍ଟ କାଟି ସିଲାଇ କରନ୍ତି । ବାହାରର ଲୋକମାନେ ସେମାନଙ୍କର ପ୍ୟାଣ୍ଟ୍ ସାର୍ଟ, ଅଣ୍ଡର ଓୟାର, ସାୟା, ବ୍ଲାଉଜ ପ୍ରଭୃତି ଏଠାରେ ସିଲାଇ କାର୍ଯ୍ୟ କରାଇ ଧାର୍ଯ୍ୟ ହୋଇଥିବା ସିଲାଇ ମଜୁରୀ ଦିଅନ୍ତି । ଏହି କାର୍ଯ୍ୟ ଫଳରେ ହଷ୍ଟେଲର ପିଲାମାନେ ବାର୍ଷିକ ଦେଢ ହଜାରରୁ ଦୁଇ ହଜାର ପର୍ଯ୍ୟନ୍ତ ଟଙ୍କା ସରକାରଙ୍କ ଟ୍ରେଜେରୀରେ ଜମା ଦେଇ ଥାଆନ୍ତି । ପିଲାମାନଙ୍କୁ ରୋଜଗାରକ୍ଷମ କରିବା ଏହି ଶିକ୍ଷାର ମୌଳିକ ଉଦ୍ଦେଶ୍ୟ । ଏପରି ମଧ୍ୟ ଦେଖା ଦେଇଛି କେତେକ ପିଲା ଅନୁଷ୍ଠାନରୁ ଚାଲିଗଲା ପରେ ବାହାରେ ସିଲାଇ ମେସିନ କିଣି ଦର୍ଜି ବ୍ୟବସାୟରେ ଚଳୁଛନ୍ତି । ପ୍ରାୟ ଶତକଡ଼ା ୫ ଜଣ ଏହି ବ୍ୟବସାୟ ଦ୍ୱାରା ଜୀବିକା ନିର୍ବାହ କରୁଛନ୍ତି । ଯେଉଁମାନେ ମେସିନ କିଣି ସ୍ୱାଧୀନଭାବରେ ବ୍ୟବସାୟ କରିବାକୁ ଅସମର୍ଥ ସେମାନେ ବଡ଼ ବଡ଼ ଦୋକାନରେ କାର୍ଯ୍ୟକରି ଦୈନିକ ମଜୁରୀ କିମ୍ବା ମାସିକ ବେତନ ପାଆନ୍ତି ।

ହଷ୍ଟେଲରେ ଗୋଟିଏ ପୁଷ୍ପୋଦ୍ୟାନ ଅଛି । ତାହା ମଲ୍ଲୀ, ଗୋଲାପ, ଟଗର, ହେନା ଓ ଅନ୍ୟାନ୍ୟ ପୁଷ୍ପିତ ଲତାରେ ପୂର୍ଣ୍ଣ । ପିଲାମାନଙ୍କର ମନୋରଞ୍ଜନ ପାଇଁ ଏ ପୁଷ୍ପୋଦ୍ୟାନର ରଚନା । ପିଲାମାନେ ଏ ବଗିଚାର ରକ୍ଷଣାବେକ୍ଷଣର ଭାର ନେଇ ଥାଆନ୍ତି । କେହି ଯଦି ଫୁଲ ତୋଳିବାକୁ ସେମାନଙ୍କୁ ଅନୁରୋଧକରେ ସେମାନେ ତୋଳିବାକୁ କୁଣ୍ଠା-ବୋଧ କରନ୍ତି ଏବଂ କହନ୍ତି, ଫୁଲ ତୋଳିବା ମାନେ ବଗିଚାର ସୌନ୍ଦର୍ଯ୍ୟ ନଷ୍ଟ କରିବା । ତେଣୁ ବଗିଚାର କୌଣସି ଦିଗରେ କ୍ଷୟକ୍ଷତି ନ ହେବାକୁ ସେମାନେ ସଦାସର୍ବଦା ସଜାଗ ରହନ୍ତି ।

ହଷ୍ଟେଲ ଭିତରେ ବିଭିନ୍ନ ପନିପରିବାର ଚାଷ କରାଯାଏ । ସମସ୍ତ ପିଲାମାନଙ୍କୁ ପ୍ରାୟ ଅଧ ଘଣ୍ଟାଏ କାମ କରିବାକୁ ପଡ଼ିଥାଏ । ଫଳରେ ପରିମିତ ପରିମାଣର ସାର ପ୍ରୟୋଗ କରି କି ପ୍ରକାର ପନିପରିବା ଉତ୍ପାଦନ କରିବାକୁ ହୁଏ ସେ ବିଷୟରେ ସେମାନେ ଶିକ୍ଷା ପାଆନ୍ତି । ଉତ୍ପାଦିତ ପନିପରିବା ସେମାନେ ଉପଭୋଗ କରନ୍ତି ଏବଂ ଅତ୍ୟଧିକ ପରିମାଣର ହେଲେ ତାହା ସର୍ବସାଧାରଣରେ ବିକ୍ରି ହୁଏ । ଏପରି ମଧ୍ୟ ଦେଖାଯାଇଛି ଅନୁଷ୍ଠାନରୁ ଗଲାପରେ ସେମାନେ ପିତାମାତାଙ୍କୁ କୃଷି କାର୍ଯ୍ୟରେ ସାହାଯ୍ୟ କରି ସାମାଜିକ ଜୀବନଯାପନ କରୁଛନ୍ତି ।

ଅନୁଷ୍ଠାନରେ ରହୁଥିବା ପିଲାମାନଙ୍କର ମନୋରଞ୍ଜନ ପାଇଁ ହାରମୋନିୟମ, ଖୋଳ, ଢୁବିତବଲା, ଗିନି ଓ ଖଞ୍ଜଣୀ ପ୍ରଭୃତି ଯୋଗାଇ ଦିଆଯାଇଥାଏ । ପ୍ରତିଦିନ ସଂଧ୍ୟାବେଳେ ସେମାନେ ସମବେତ କଣ୍ଠରେ ପ୍ରାର୍ଥନା କଲାବେଳେ ଏସବୁ ବାଦ୍ୟଯନ୍ତ୍ର ବ୍ୟବହାର କରିଥାନ୍ତି । ଏହି ବାଦ୍ୟଯନ୍ତ୍ରର ପ୍ରୟୋଗରେ ସେମାନେ ମଧ୍ୟ ଆଦିବାସୀ ନୃତ୍ୟ ଗୀତରେ ଦିବସର କ୍ଲାନ୍ତି ଦୂର କରିବା ସଙ୍ଗେ ସଙ୍ଗେ ଅପୂର୍ବ ଆନନ୍ଦ ଉପଭୋଗ କରନ୍ତି । ଏତଦ୍‌ବ୍ୟତୀତ ସେମାନଙ୍କୁ ଭଲିବଲ୍, ଲୁଡ୍ଡୁ ଓ କ୍ୟାରମ୍ ଯୋଗାଇ ଦିଆଯାଇଥାଏ । ସେମାନଙ୍କ ଭିତରୁ ପ୍ରାୟ ଅଧିକାଂଶ ଭଲି ଖେଳନ୍ତି । ପ୍ରତି ରବିବାର ଦିନ ଛାତ୍ରାବାସର ପିଲାମାନଙ୍କୁ ସହର ପରିକ୍ରମାକରି ସହରର ଦର୍ଶନୀୟ ସ୍ଥାନ ଏବଂ ଅନ୍ୟାନ୍ୟ ପ୍ରଧାନ ଅନୁଷ୍ଠାନଗୁଡ଼ିକ ଦେଖିବା ପାଇଁ ଅନୁମତି ଦିଆଯାଇଥାଏ । ଫଳତଃ ସେମାନେ ଲୋକସଂପର୍କରେ ଆସି ସାମାଜିକ ରୀତିନୀତିର ପ୍ରୟୋଗାତ୍ମକ ବିଧି ଜାଣିବାକୁ ପାଆନ୍ତି । ପ୍ରତ୍ୟେକ ମାସରେ ଲୋକ ସଂପର୍କ ବିଭାଗ ପିଲାମାନଙ୍କର ମାନସିକ ପରିବର୍ତ୍ତନ ପାଇଁ ଚଳଚିତ୍ର ପ୍ରଦର୍ଶନର ବନ୍ଦୋବସ୍ତ କରିଥାଆନ୍ତି । ପ୍ରୋବେସନ ହଷ୍ଟେଲର ବାୟୁମଣ୍ଡଳ ଅତିଧୀର ଓ ଶାନ୍ତ । କୌଣସି ଦର୍ଶକଙ୍କୁ ଏହା ଏକ ଶାନ୍ତିମୟ ତପୋବନର ସୂଚନା ଦେଇଥାଏ । ହଷ୍ଟେଲରେ ଜଣେ ଅଧୀକ୍ଷକ ଅଛନ୍ତି, ଯେ କି ହଷ୍ଟେଲର ଦାୟିତ୍ୱନେଇ ସମସ୍ତ ବିଭାଗ ପରିଚାଳନା କରନ୍ତି ।

ଅନୁଷ୍ଠାନ ପ୍ରତିଷ୍ଠିତ ହେଲା ଦିନଠାରୁ ଅନ୍ୟୁନ ୨୩୦ ଜଣ ପିଲା ଆନୁଷ୍ଠାନିକ ସଂସ୍କାର ପଦ୍ଧତିରେ ବ୍ରତୀ ହୋଇଛନ୍ତି । ସେମାନଙ୍କର ଆଚରଣ ବିଧିର କୌଣସି ବ୍ୟତିକ୍ରମ ଘଟିଲା ପରି ଅନୁଭବ କରାଯାଉ ନାହିଁ । ବର୍ତ୍ତମାନ ସରକାରଙ୍କର ଯେଉଁ ଅଭିନବ ପରିକଳ୍ପନା କାର୍ଯ୍ୟକାରୀ ହେବାକୁ ଯାଉଛି ତାହା ପ୍ରଚଳିତ ହେଲେ ଅନୁଷ୍ଠାନ ଏହାର ବିଜୟକେତନ ଉଡ଼ାଇ ବିଶେଷଭାବେ ସିଦ୍ଧି ଲାଭ କରି ପାରିବ ।

ଅଧୀକ୍ଷକ, କିଶୋର କାରାଗାର, ଅନୁଗୁଳ ।

କୌଣସି ଏକ ଶ୍ରେଷ୍ଠ ଜାତିର ଭାଗ୍ୟରେ ଅବହେଳା ଓ ଅବଜ୍ଞା ବେଶୀ ଦିନ ରହେ ନାହିଁ । ସେଥିପାଇଁ କବିମାନେ ଭାଗ୍ୟକୁ ଚକ୍ରର ସହିତ ତୁଳନା କରିଥାନ୍ତି । ବ୍ୟକ୍ତିର ଭାଗ୍ୟପରି ଜାତିର ଭାଗ୍ୟ ମଧ୍ୟ ପରିବର୍ତ୍ତନଶୀଳ ।

**ଜାନକୀ ବଲ୍ଲଭ ପଟ୍ଟନାୟକ**

# ଅଭ୍ୟୁଦୟ ପଥେ ଆଦିମାନବର ବଂଶଧର

ଶ୍ରୀ ଯଶୋବନ୍ତ ସିଂହ ବାରିକ

ପ୍ରାକୃତିର ଶାନ୍ତକ୍ଲାନ୍ତ କମନୀୟ କୋଳରେ, ପକ୍ଷୀର କାକଳି ଓ ଝରା ପତ୍ରର ମର୍ମରରେ ନିଜକୁ ହଜେଇ ଦେଇ ବିଶ୍ବର ଆଦିମାନବ ଯୁଗଯୁଗ ଧରି ନିଜର ସଂଚିତ ଲହୁ ଓ ଲୁହକୁ ଏକାକାର କରି ନିଘଞ୍ଚ ବନାନୀରେ ଯେ କିଭଳି ଅତିବାହିତ କରି ପାରିଛି, ତାହା ଆଜି ଭାବି ବସିଲେ ବିସ୍ମୟାଭିଭୂତ ହେବାକୁ ପଡ଼େ ।

କିନ୍ତୁ ଆଜି ସେ ଯୁଗର ସକଳ ଅନ୍ଧକାରକୁ ଦୂରେଇ ଦେଇ ମୁକ୍ତିର ନୂଆ ସୂର୍ଯ୍ୟାଲୋକ ସେମାନଙ୍କୁ ବଞ୍ଚିବାର ନୂତନ ଦିଗନ୍ତରେ ପହଁଞ୍ଚାଇ ପାରିଛି । ଆସନ୍ତୁ ଆଜି ସେଇ ଆଦିମାନବର ବଂଶଧର ମାଟି ମାଆର ଅମୃତପୁତ୍ର, ନିୟମଗିରି ପର୍ବତ ଗହ୍ୱରର ଡଙ୍ଗରିଆ କନ୍ଧମାନଙ୍କର ଉନ୍ନତି ସଂପର୍କରେ ପର୍ଯ୍ୟାଲୋଚନା କରିବା ।

ସ୍ମିତ ହାସ୍ୟମୟୀ ଉତ୍କଳର ଛବିଳ କୋଳକୁ ଧରି ଠିଆ ହୋଇଛି ପୁରାଣ ପ୍ରସିଦ୍ଧ ନିୟମଗିରି ପର୍ବତମାଳା ସମୁଦ୍ର ପତନର ପ୍ରାୟ ୧୦୦୦'ରୁ ୫୦୦୦' ଉଚ୍ଚରେ ।

ଅଧୁନାତମ କୋରାପୁଟର ଗୁଣୁପୁର ଅନ୍ତର୍ଗତ ବିଷମ-କଟକ ଓ ମୁନିଗୁଡ଼ା ବ୍ଲକ, ରାୟଗଡ଼ାର କଲ୍ୟାଣସିଂହପୁର ବ୍ଲକ ଓ କଳାହାଣ୍ଡି ଜିଲ୍ଲାର ବିଶ୍ବନାଥପୁର ବ୍ଲକ ପୂର୍ବୋକ୍ତ ନିୟମଗିରି ପର୍ବତମାଳାର ଅନ୍ତର୍ଭୁକ୍ତ ।

ଏହାର ଅନ୍ତଃପ୍ରଦେଶରେ ଡଙ୍ଗରିଆ କନ୍ଧମାନଙ୍କର ଶୋଭିତ ଝାଟିମାଟିର କୁଡ଼ିଆଗୁଡ଼ିକ ଆମ୍ବ, ପଣସ, ଜାମୁ ବୃକ୍ଷର ବ୍ୟୁହ ଭେଦକରି ଯେ କୌଣସି ଆଗନ୍ତୁକର ଦୃଷ୍ଟି ପଥାରୂଢ଼ ହୁଏ ।

## ସାମାଜିକ ସ୍ଥିତି ଓ ରୀତନୀତି

ଏମାନେ ଏକ ସ୍ବତନ୍ତ୍ର ଭାଷା 'କୁଇ' ବ୍ୟବହାର କରନ୍ତି । ସମଗ୍ର ପାର୍ବତ୍ୟ ଅଞ୍ଚଳ ଓ ପାର୍ବତ୍ୟଜାତ ପଦାର୍ଥକୁ ନେଇ ଏମାନଙ୍କ ଜୀବନଯାତ୍ରା ସଚଳ । ଫଳ ସଂଗ୍ରହ ଓ ପୋଡୁଚାଷ ଏମାନଙ୍କ ମୁଖ୍ୟ ଜୀବିକା । ରାଗି ଓ ଝୁଦରେ ତିଆରି 'ଯାଉ' ଓ 'ସଲପରସ' ଏମାନଙ୍କର ମୁଖ୍ୟ ଖାଦ୍ୟ ଓ ପାନୀୟ ଯଦିଓ ମଇଁଷି ମାଂସ ଓ ଶୁଖିଲା ମାଛ ଏମାନଙ୍କର ଅତିପ୍ରିୟ ଖାଦ୍ୟ ।

ଏମାନଙ୍କସହ 'ଡମ' ନାମକ ଏକ ଚତୁର ଜାତି ବସବାସକରି ଏମାନଙ୍କୁ ନାନା ଉପାୟରେ ଶୋଷଣ କରିଥାନ୍ତି । ବିଭିନ୍ନ ଧାର୍ମିକ ରୀତିନୀତି, କୁସଂସ୍କାର, ବ୍ୟୟବହୁଳ ସାମାଜିକ ପର୍ବପର୍ବାଣୀ, ପ୍ରଚୁର ମଦ୍ୟପାନ ଓ ପୁରୁଷମାନଙ୍କ ଆଳସ୍ୟ ସର୍ବୋପରି କନ୍ୟାପକ୍ଷକୁ ବରପକ୍ଷର ଯୌତୁକଦାନ ଏମାନଙ୍କ ଆର୍ଥିକ ଦୁର୍ଗତିର ମୁଖ୍ୟ କାରଣ । ପୂର୍ବର ମେରିଆବଳି ପ୍ରଥା ଯଦିଓ ଏବେ ପରିବର୍ତ୍ତିତ ପରିସ୍ଥିତିରେ ନାହିଁ ତଥାପି ମଇଁଷିବଳି ପ୍ରଥା ଏବେବି ପ୍ରଚଳିତ । ଆଧୁନିକ ପଞ୍ଚାୟତରାଜ ପରି ଏମାନଙ୍କ ପ୍ରଚଳିତ 'ମୁଖିଆ' ଦ୍ୱାରା ଗ୍ରାମମୁଖ୍ୟଙ୍କ ତତ୍ତ୍ୱାବଧାନରେ ଶାସନ ଓ ସାମାଜିକ ପ୍ରଥା ନିୟନ୍ତ୍ରିତ । 'ଜାନି' ବା ପୂଜକର ପୂଜାପାଠ, 'ବିଷ୍ଣୁଜାନି' ଓ 'କାଳିସି'ର ବୈଦ୍ୟଗିରି, 'ମଣ୍ଡଳ' ବା ମୁଖ୍ୟ ଓ 'ବାରିକ' ବା ମଧ୍ୟସ୍ଥି ପ୍ରତି ଏମାନେ ଅତ୍ୟନ୍ତ ବିଶ୍ୱସ୍ତ । ବଣଜଙ୍ଗଲରେ ବଢ଼ି ଉଠୁଥିବା ବିଭିନ୍ନ ବୃକ୍ଷଲତା ଓ ଗୁଳ୍ମରୁ ଔଷଧ ପ୍ରସ୍ତୁତକରି ରୋଗ ଉପଶମ କରାଇବାରେ ଆଶାନ୍ୱିତ ।

ବାହାର ସଭ୍ୟ ସମାଜଠୁ ବହୁଦୂରରେ ଥାଇ ବି ଏମାନେ ନିଜର ନୃତ୍ୟ, ଗୀତ, ବାଦ୍ୟ, ପର୍ବପର୍ବାଣୀ ଓ ପ୍ରାଚୀନ କାହାଣୀ, ଲୋକକଥାକୁ ନେଇ ବିଶେଷ ଗର୍ବିତ ।

ଏମାନଙ୍କ ସାମାଜିକ ଜୀବନଧାରା ଅତି ମନୋରମ ଓ ସ୍ୱପ୍ନିଳ ଯଦିଓ ଏମାନଙ୍କ ଜୀବନରେ ମଧ୍ୟ ବୈବାହିକ ଛାଡ଼ପତ୍ର, ଏକରୁ ଏକାଧିକ ବିବାହ ଓ ସାମୟିକ ଉଚ୍ଛୃଙ୍ଖଳତା ଦେଖା ଦେଇଥାଏ ।

## ଅଭ୍ୟୁଦୟ ପଥେ

ବିଶ୍ୱର ଏହି ଅବହେଳିତ ଦୁର୍ଲ୍ଲଭ ମାନବ ବଂଶଧରମାନଙ୍କର ସର୍ବବିଧ ଉନ୍ନୟନ ନିମିତ୍ତ ୧୯୭୮ ମସିହାରେ ଆରମ୍ଭହୁଏ 'ଡଙ୍ଗରିଆ କନ୍ଧ ଉନ୍ନୟନ ସଂସ୍ଥା' ସଂକ୍ଷେପରେ D. K. D. A. ଏହି ସଂସ୍ଥା ବିଷମ-କଟକ ଓ ମୁନିଗୁଡ଼ା ବ୍ଲକର ୧୧୫ ବର୍ଗ କି.ମି. ଅଞ୍ଚଳର ୫ଟି ଗ୍ରାମପଞ୍ଚାୟତ ଯଥା କୁର୍ଲି, ଚାଟିକୋଣା, ଶିବପଦର, ପାତ୍ରଗୁଡ଼ା ଓ ମୁନିଗୁଡ଼ା ଅନ୍ତର୍ଗତ ୫୭ଟି ଗ୍ରାମପାଇଁ

ଭବିଷ୍ୟ । ଭାରତ ସରକାରଙ୍କ ଏଇ "ମାଇକ୍ରୋ ପ୍ରୋଜେକ୍ଟ"ର ମୂଳ ଲକ୍ଷ୍ୟ ହେଉଛି– ଏମାନଙ୍କର ସର୍ବବିଧ ପ୍ରଗତିପାଇଁ ଆର୍ଥିକ ଉନ୍ନୟନ !

ବର୍ତ୍ତମାନ ସୁଦ୍ଧା ୧,୧୬୮'୦୩ ଏକର ଚାଷ ଉପଯୋଗୀ ଅଞ୍ଚଳ ଓ ୨୬,୯୬୮'୮୩ ଏକର ଜଙ୍ଗଲ ଅଞ୍ଚଳରେ ମୋଟ ଲୋକସଂଖ୍ୟା ୪,୦୨୭ । ଏଥିରୁ ମୋଟ ପୁରୁଷ ସଂଖ୍ୟା୧,୭୭୮ ଓ ସ୍ତ୍ରୀ ସଂଖ୍ୟା ୨.୨୪୯ । ଏମାନଙ୍କର ମୋଟ ଗୃହ ସଂଖ୍ୟା ୯୪୯ ସାମଗ୍ରିକଭାବେ ଶିକ୍ଷିତ ସଂଖ୍ୟା ୧୬୮ ରାଗି, ଆର, କୁ, ଜଡ଼ା, ହରଡ଼, ହଳଦି ହେଉଛି ଏମାନଙ୍କର ମୁଖ୍ୟ ଫସଲ । ନିୟମଗିରି ପାର୍ବତ୍ୟାଞ୍ଚଳରେ ମୃତ୍ତିକା ଉପଯୋଗୀ କଦଳୀ, ଲେମ୍ବୁ, ପଣସ,'ସପୁରୀ, କମଳା ଓ ଆମ୍ବ ଫଳଚାଷ ପ୍ରତି ଏମାନେ ଆଗ୍ରହୀ ।

ବର୍ତ୍ତମାନ ଡଙ୍ଗରିଆ କନ୍ଧ ଉନ୍ନୟନ ସଂସ୍ଥା' ଦ୍ୱାରା ୫୦ଟି ଗ୍ରାମର ପ୍ରାୟ ୪,୦୦୦ ଏକର ଜମିରେ ଆଧୁନିକ ପ୍ରଣାଳୀରେ ଫଳଚାଷ କରାଯାଉଅଛି ।

| | | |
|---|---|---|
| କୃଷି ସହାୟତା, ଫସଲ ଓ ପନିପରିବା ଚାଷ ପାଇଁ– | | ଟ ୧,୨୮,୩୨୯'୮୬ |
| ହଳ ବଳଦ | .. | ଟ ୬୨,୭୬୭'୦୦ |
| କୃଷି ଋଣ ବାବଦ | .. | ଟ ୨୦,୬୧୮'୮୫ |
| ସମବାୟ ଋଣ | .. | ଟ ୧,୫୦,୦୦୦'୦୦ |
| ରାସ୍ତା ଘାଟ | .. | ଟ ୧,୦୮,୩୬୧'୦୦ |
| ଜଳସେଚନ | .. | ଟ ୧୨,୩୯୪'୦୦ |
| ଘର ତିଆରି | .. | ଟ ୧,୪୬,୧୦୮'୩୪ |
| ଶିକ୍ଷା | .. | ଟ ୧,୩୩,୭୪୮'୧୨ |
| ମଧ୍ୟାହ୍ନ ଭୋଜନ କେନ୍ଦ୍ର | .. | ଟ ୫,୮୧୨'୯୯ |
| ଛେଳି ପାଳନ | .. | ଟ ୫୨,୮୪'୦୦ |
| କୁକୁଡ଼ା ପାଳନ | .. | ଟ ୫୫୯'୫୦ |
| ଲୁଗା ବୁଣା | .. | ଟ ୭,୩୦୫'୦୦ |
| ମହୁମାଛି ପାଳନ | .. | ଟ ୧୧,୧୬୨'୦୬ |
| ଲୌହକାର (କମାର) | .. | ଟ ୧,୩୩୫'୮୫ |
| ବଢ଼େଇ କାରିଗର | .. | ଟ ୩,୨୪୨'୧୫ |
| ସ୍ୱାସ୍ଥ୍ୟ | .. | ଟ ୭,୭୭୮'୯୭ |
| ତାଲିମ ଓ ପ୍ରଚାର | .. | ଟ ୩୪,୯୯୫'୪୯ |
| ବୃତ୍ତି ( Stipend ) | .. | ଟ ୧,୯୦୦'୦୦ |

| | | |
|---|---|---|
| ଅଗ୍ନି ନିର୍ବାପନ | .. | ଟ ୧,୬୧୭'[illegible] |
| ଗାଈ ଗୋରୁ ବୀମା | .. | ଟ ୧,୭୯୯'୦[illegible] |
| ବୃକ୍ଷରୋପଣ | .. | ଟ ୪,୬୫,୭୩୧'୧[illegible] |
| ରାସ୍ତା ନିର୍ମାଣ | .. | ଟ ୮୦,୦୦୦'୦[illegible] |
| ଭୂ-ଉନ୍ନୟନ | .. | ଟ ୧୦,୬୬୩'୦[illegible] |
| ଭୂମି ସମତଳ | .. | ଟ ୬୫,୮୬୭'୪[illegible] |
| ଜମିରେ ପଥର ବେଢ଼ାଇବା | .. | ଟ ୧୩,୦୨୪'୧[illegible] |

୧୯୮୪ ମାର୍ଚ୍ଚ ଶେଷ ସୁଦ୍ଧା ଏହି ସଂସ୍ଥା ମାଧ୍ୟମରେ ଉପରୋକ୍ତ ପରିମାଣର ଅର୍ଥ ଖର୍ଚ୍ଚ କରାଯାଇଅଛି ।

ଏହି ସଂସ୍ଥାଦ୍ୱାରା ଅଦ୍ୟାବଧି ୩ଟି ମଧ୍ୟାହ୍ନ ଭୋଜ କେନ୍ଦ୍ରରୁ ୬୦ ଜଣ, ଚାଟଶାଳିର ୫୪୨ ଜଣ, ପୌଢ଼ଶିକ୍ଷା କେନ୍ଦ୍ର ୪୯୦ ଜଣ ଓ ବୃତ୍ତିପ୍ରାପ୍ତ ୧ ଜଣ ଛାତ୍ର, ଛେଳି ପାଳନ ୯୬ ଜଣ, କୁକୁଡ଼ା ପାଳନରୁ ୩୦ ଜ ଲୁଗାବୁଣାରୁ ୧୪୯ ଜଣ, ସୂଚୀଶିଳ୍ପ (Embroider ୧୧୨ ଜଣ, ମହୁମାଛି ପାଳନରୁ (୧୦୦ ଟି ବାକ୍ସ ପାଇଁ ୫୦ ଜଣ, ଲୌହକାର (କମାର) କାର୍ଯ୍ୟରୁ ୨ ଜଣ, ବଢ଼େ କାର୍ଯ୍ୟରୁ ୪ ଜଣ, ଭୂ-ଉନ୍ନୟନରେ ୬୪ ଏକର ପାଇଁ ୩୩ ଜଣ ଭୂମି ସମତଳ କରିବାରେ ୫୪ ଏକର ପାଇଁ ୨୮ ଜଣ ଓ ପଥ ବେଢ଼ାଇବା ପାଇଁ (୪୪ ଏକର) ୨୭ ଜଣ ଉପକୃତ ହୋଇଛନ୍ତି ସେହିଭଳି ୬୬୪'୯୬ ଏକର ଜମିରେ ବୃକ୍ଷ ରୋପଣ ଓ ୧'୫ କି. ମି ରାସ୍ତା ନିର୍ମାଣ କରାଯାଇ ପାରିଛି । ଆଉ ମଧ୍ୟ ଏହି ସଂ ଦ୍ୱାରା ୧୯୭୯ରେ ପ୍ରତିଷ୍ଠିତ "ନିୟମ ଗିରି ଫଳ ଉତ୍ପାଦନ ସମବା ସମିତି" ଦୁଇଟି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଯଥା–ନିତ୍ୟ ବ୍ୟବହାର ପଦାର୍ଥ ଯୋଗାଣ ଓ ବନ୍ୟଜାତ ଓ ବଳକା ଫସଲ ଓ ଫଳ ସୁଲଭ ରୂପେ ତୁଳାଇ ଥାଏ । ନିକଟସ୍ଥ ରୁଟିକୋଣାଠାରେ ଏ 'ଫଳ ସଂରକ୍ଷଣ' କେନ୍ଦ୍ର ପ୍ରତିଷ୍ଠିତ ହୋଇଛି । ସେଠାରେ ସ୍ଥାନୀ ଅଧିବାସୀମାନଙ୍କୁ ଫଳରସ ସଂରକ୍ଷଣ ସଂପର୍କରେ ତାଲି ଦିଆ ହୁଏ ।

## ଦର୍ଶନୀୟ ସ୍ଥାନ

ନିୟମଗିରିର ପାଦଦେଶରେ ରୁଟିକୋଣା ରେଲଷ୍ଟେସନ ଅଳ୍ପ ଦୂରରେ ଏକ ଦୀର୍ଘାକୃତି ସୁଡ଼ଙ୍ଗ ମଧ୍ୟସ୍ଥ ପାର୍ବତ୍ୟ ଖୋଲ ଶୋଭା ପାଉଛି ଏକ ଶିବଲିଙ୍ଗ ଯେଉଁ ଅନାଦି କାଳରୁ ନିକଟରେ ଏଠାରେ ଏକ ଶିବ ମନ୍ଦିର ପ୍ରତିଷ୍ଠା କରାଯାଇ ପୂଜା ଅର୍ଚ୍ଚନା କରାଯାଉଅଛି । ଏହି ଶିବ ମନ୍ଦିର ସନ୍ନିକଟ ଜଳପ୍ରପା ପ୍ରାୟ ୩୦୦ ଫୁଟ ଉଚ୍ଚରୁ ତଳକୁ ଗଡ଼ି ଆସିଛି । ଏହାର ନମନୀ ହିମଶୀତଳ ଜଳଦ୍ୱାରା ସୃଷ୍ଟ ଶବ୍ଦ ଶବ୍ଦ ଉଦ୍‌ଧ୍ୱନୀ ଦର୍ଶକଙ୍କୁ ବିମୋହିତ କରେ । ଏହା ସଙ୍ଗେ ସଙ୍ଗେ ନିୟମଗିରିର ଦିଗ ବ୍ୟାପି ଆମ୍ବ, ସପୁରୀ, କଦଳୀ ଫଳୋଦ୍ୟାନ ଓ ଶ୍ୟାମଳ ତୃଣରା ଶୋଭିତ ବନଭୂମି ଦର୍ଶକଙ୍କୁ ମୁଗ୍ଧ କରେ ।

## ଜିଲ୍ଲାପାଳଙ୍କ ପରିଦର୍ଶନ

ଗତ ତା୨୮-୭-୧୯୮୪ରିଖ ଦିନ କୋରାପୁଟ ଜିଲ୍ଲାପାଳ ଶ୍ରୀ ଅରୁଣ କୁମାର ସାମନ୍ତରାୟ ଏହି ପାର୍ବତ୍ୟାଞ୍ଚଳର ଦୀର୍ଘ ୧୨ କି. ମି. ରାସ୍ତା ପାଦରେ ବୁଲି ବୁଲି ୭୦୦ ଓ ୫୦୦ ଏକର ବିଶିଷ୍ଟ ଫଳୋଦ୍ୟାନମାନ ବୁଲି ଦେଖିଥିଲେ । କୁର୍ଲି ଗ୍ରାମରେ ଟ୧,୩୦,୦୦୦'୦୦ରେ ନିର୍ମିତ 'କୁର୍ଲି ଭିଲ୍ଲା' ( Villa ) ଓ ନିକଟସ୍ଥ ଘୃତଶାଳୀ ପରିଦର୍ଶନ କରିଥିଲେ । ସ୍ଥାନୀୟ ଅଧିବାସୀଙ୍କ ସହ ଆଲୋଚନା ବେଳେ ଜିଲ୍ଲାପାଳ ମହୋଦୟ ସେମାନଙ୍କର ପାରଂପରିକ ଫଳଚାଷର ଦକ୍ଷତାକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଆଧୁନିକ ପ୍ରଣାଳୀରେ ଫଳଚାଷ ନିମିତ୍ତ ସୁଚିନ୍ତିତ ପରାମର୍ଶ ଦେଇଥିଲେ ।

## ଶେଷ କଥନୀ

ଏହି ଅଧିବାସୀଙ୍କ ସର୍ବବିଧ ଉନ୍ନତି ପାଇଁ ଆମର ପ୍ରିୟ ସରକାର ଶତତ ଚେଷ୍ଟିତ । ଅତୀତର ଝାଟି ମାଟିର ଘର ପରିବର୍ତ୍ତେ ଇଟା ସିମେଣ୍ଟର କୋଠାଘର, ଝରଣାର ଜଳ ପରିବର୍ତ୍ତେ କୂଅ ଓ ନଳକୂଅର ପାନୀୟ ଜଳ, କାନେଣି କାଠର ସିମିତ ଆଲୋକ ପରିବର୍ତ୍ତେ ଆଜି ଝଲସା ବିଜୁଳି ଆଲୁଅ, ପାରଂପରିକ ପୋଡଚାଷ ସ୍ଥଳେ ଉନ୍ନତ ସାର ବିହନ, ସନତନ ଚାଷଜମି, ପୂର୍ବର ଶିକ୍ଷାହୀନ ବାଳକବାଳିକାଙ୍କ ପରିବର୍ତ୍ତେ ଘୃତଶାଳୀରେ ଉପପୁର ଛାତ୍ର ଛାତ୍ରୀ ଓ ପ୍ରୌଢ଼ ତାଲିମ କେନ୍ଦ୍ର, ପୂର୍ବର ରୋଗ ନିବାରକ ଝାଡା-ଫୁଙ୍କାମନ୍ତ୍ର ବଦଳରେ ସ୍ୱାସ୍ଥ୍ୟ ସହାୟକଙ୍କ ଦ୍ୱାରା ଆଧୁନିକ ଔଷଧ ପ୍ରଦାନ, ବୈଜ୍ଞାନିକ ପ୍ରଣାଳୀରେ ଫସଲ ସଂରକ୍ଷଣ, ସୁଧ ମୁକ୍ତ ଋଣ ପ୍ରଦାନ, ଚାଷ ପାଇଁ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ, ମନୋରଞ୍ଜନ ପାଇଁ ଚଳଚ୍ଚିତ୍ର ପ୍ରଦର୍ଶନ, ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ଓ ଗ୍ରାମାଞ୍ଚଳ ଦରିଦ୍ରତମ ଲୋକଙ୍କ ଅର୍ଥନୈତିକ ଉତ୍ଥାନ କାର୍ଯ୍ୟକ୍ରମ ଓ ପ୍ରଥମ ଥର ପାଇଁ ଡଙ୍ଗରିଆ କନ୍ଧଙ୍କୁ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ ଇତ୍ୟାଦି ତାଙ୍କ ସାମାଜିକ ଜୀବନରେ ଭରି ଦେଇଛି ଅମାପ ଆଲୋଡ଼ନ ଓ ଆଗାମୀ ପାଇଁ ଏକ ନୂତନ ଜାଗରଣ ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ରାୟଗଡ଼ା



କହ କହ ଆରେ ନଟ କୁଟିଆ
କାହା ଲୁଟ ପାଇଁ ହୋଉଛୁ ଠିଆ ।

# ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ପାରଳାର ଦାନ

ଶ୍ରୀ ଭାସ୍କର ପଣ୍ଡା

ପାରଳାଖେମୁଣ୍ଡିର ପ୍ରଶସ୍ତି ଗାନ କରି କବିବର ରାଧାନାଥ ରାୟ ମହେନ୍ଦ୍ରଗିରି କାବ୍ୟରେ ଲେଖିଥିଲେ:

ପୁଷ୍ପ ଫଳ ଶସ୍ୟ ଶାଳିନୀ ପାରଳା
ଅତପଳା ତହିଁ ଚପଳା ଚପଳା
ହୋଇଥିଲା ସର୍ବ ଲୋକରେ ପ୍ରଚାର
ଫଳିତ ଜ୍ୟୋତିଷେ ପ୍ରତିଷ୍ଠା ଯାହାର ।

ବାସ୍ତବରେ ପାରଳାର ଐଶ୍ୱର୍ଯ୍ୟ ଓ ବୈଭବ ଦିନେ ଓଡ଼ିଶାବାସୀଙ୍କର ଭ୍ରୂକୁଞ୍ଚନ କରୁଥିଲା । ଅତୀତରେ ପାରଳାର ଏକ ସମୃଦ୍ଧ ଇତିହାସ ଥିଲା । ଶିକ୍ଷା, ସଂସ୍କୃତି, କଳା, ସଂଗୀତ କ୍ଷେତ୍ରରେ ଏହାର ସ୍ଥାନ ଅତି ଉଚ୍ଚରେ ଥିଲା । ଓଡ଼ିଶାର ତତ୍କାଳୀନ ସାଂସ୍କୃତିକ ବୈଭବକୁ ପାରଳାର ଦାନ ଅବିସ୍ମରଣୀୟ । ଏହାକୁ ସ୍ୱର୍ଗରାଜ୍ୟ ବୋଲି କୁହାଯାଏ ।

ଓଡ଼ିଶାର ସାମଗ୍ରିକ ଜୀବନ ଧାରା, ସଂସ୍କୃତି, ସାହିତ୍ୟ ଏଭଳି କୌଣସି କ୍ଷେତ୍ର ନାହିଁ ଯେଉଁଥିରେ ପାରଳାର ନାମୋଲ୍ଲେଖ ନାହିଁ । ବିଭିନ୍ନ ସମୟରେ ପ୍ରଜାବତ୍ସଳ ରାଜାଗଣ ନିଜ ରାଜ୍ୟର ଉନ୍ନତି ବ୍ୟତୀତ ସାମୂହିକ ଓଡ଼ିଶାର ଉନ୍ନତିକଳ୍ପେ ଅନେକ ରାଷ୍ଟ୍ର କରିଯାଇଛନ୍ତି । ବୋଲିବା ବାହୁଲ୍ୟ, ପାରଳାକୁ ଯେତେ ପଣ୍ଡିତ, ବାଗ୍ମୀ, ସଂଗୀତକାର, କବି ପ୍ରାଦେଶିକ ସ୍ତରରୁ ଆସି ନିଜ ନିଜର ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି, ସେସବୁ ରାଜପୃଷ୍ଠପୋଷକତା ଓ ରାଜାମାନଙ୍କର ଅନୁଗ୍ରହରୁ ହିଁ ସମ୍ଭବ ହୋଇଛି ।

ଓଡ଼ିଶାର ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ପାରଳା ରାଜବଂଶ ସମେତ ଏହି ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିବା କବି ପଣ୍ଡିତମାନଙ୍କ ଦାନ ଅବିସ୍ମରଣୀୟ । ଯେଉଁ ସଂସ୍କୃତ କବିଗଣ ଗ୍ରନ୍ଥମାନ ରଚନାକରି ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରିଛନ୍ତି, ସେମାନଙ୍କ ମଧ୍ୟରେ କବିରତ୍ନ ପୁରୁଷୋତ୍ତମ ମିଶ୍ର, କବିଭୂଷଣ ଗୋପିନାଥ ପାତ୍ର, ଲୋକନାଥ ତ୍ରିପାଠୀ, ସ୍ୱୟଂ ଗଜପତି ନାରାୟଣ ଦେବ ଅନ୍ୟତମ । ଚୈତନ୍ୟ ରାଜଗୁରୁଙ୍କ ସୂର୍ଯ୍ୟ ସିଦ୍ଧାନ୍ତ ନାମକ ଗଣିତ ଗ୍ରନ୍ଥ, କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ 'ନୀଳାଦ୍ରି ଶତକ', ଲୋକନାଥ ତ୍ରିପାଠୀଙ୍କ 'କବି କଣ୍ଠହାର', ଗୋପୀନାଥ ପାତ୍ରଙ୍କ 'କବି ଚିନ୍ତାମଣି' ଇତ୍ୟାଦି ଗ୍ରନ୍ଥ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରନ୍ତି । ଗୋପୀନାଥ ପାତ୍ରଙ୍କ କବି ଚିନ୍ତାମଣି ଗ୍ରନ୍ଥଟି ପଚିଶଟି କିରଣରେ ବିଭକ୍ତ ଓ ଏଥିରେ ଭାରତର ଅନେକ ଗ୍ରନ୍ଥକାରଙ୍କ ମତ ସନ୍ନିବେଶିତ ହୋଇଛି । ଚୈତନ୍ୟ ରାଜଗୁରୁ ଜାତକାଳଙ୍କାର' ଓ 'ଲଗ୍ନ ଦୀପିକା' ନାମକ ଦୁଇଟି ଗ୍ରନ୍ଥ ରଚନା କରି ଓଡ଼ିଶାର ଜ୍ୟୋତିଷ ଶାସ୍ତ୍ରକୁ ଦାନ ରଖିଯାଇଛନ୍ତି । କବିରତ୍ନ ପୁରୁଷୋତ୍ତମ ମିଶ୍ର (ସେ ଶ୍ରୀକ୍ଷେତ୍ରରୁ ପାରଳା ଆସିଥିଲେ) 'ହଂସଦୂତ' ଓ "ନୈଷଧୀୟ ଚରିତ" ଆଦିର ଟୀକା କରିଛନ୍ତି । ଏତଦ୍‌ଭିନ୍ନ 'ରାମଚନ୍ଦ୍ରୋଦୟ', ସୁବନ୍ତ ପ୍ରଦୀପିକା ଓ ନୀଳାଦ୍ରିନାଥ ଶତକ ଇତ୍ୟାଦି ଗ୍ରନ୍ଥର ପ୍ରଣେତା ପୁରୁଷୋତ୍ତମ ମିଶ୍ର ।

ଓଡ଼ିଶାର ଭକ୍ତି ସାହିତ୍ୟକୁ ପାରଳାଖେମୁଣ୍ଡିର କବିମାନଙ୍କ ଦାନ କିଛି କମ୍ ନୁହେଁ । ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ରଚିତ ଭକ୍ତି ଗ୍ରନ୍ଥ ଓ କାବ୍ୟ କବିତାର ସ୍ୱତନ୍ତ୍ର ସ୍ଥାନ ରହିଛି । ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ନୀଳାଦ୍ରିନାଥ ଶତକରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଶ୍ଳୋକ ରଚିତ ହୋଇଛି । ସେ "ଶ୍ରୀବୃନ୍ଦାବନ ଚନ୍ଦ୍ର ବିହାର" ନାମକ ଏକ ଭକ୍ତି କାବ୍ୟ ଓଡ଼ିଆ ଭାଷାରେ ରଚନା କରିଥିଲେ । ରାଜାଙ୍କର ବୃନ୍ଦାବନ ଯାତ୍ରା ସମେତ ବୈଷ୍ଣବ ଧର୍ମର ରାଡ଼୍‌କର୍ଣ୍ଣ ସ୍ତୁତଃ ଭାବୁଲ୍ୟମାନ । ଏହାଙ୍କର ଅନ୍ୟ ତିନୋଟି ଦୁଷ୍ପ୍ରାପ୍ୟ 'କାବ୍ୟ ଗ୍ରନ୍ଥ ହେଲା ଅଳଙ୍କାର ଚନ୍ଦ୍ରିକା, 'ରାମଚନ୍ଦ୍ରୋଦୟ' ଏବଂ ଓଡ଼ିଆରେ ପ୍ରଭାବତୀ ପରିଣୟ । ମୂଳ ସଂସ୍କୃତରୁ ଅନୂଦିତ 'ଏକାଦଶୀ ମାହାତ୍ମ୍ୟ' ଅନ୍ୟ ଜଣେ କବି ଓ ଚିତ୍ରକାର ହରିକୃଷ୍ଣ ମହାପାତ୍ରଙ୍କର । ଊନବିଂଶ ଶତାବ୍ଦୀ ପାରଳାରେ ସାହିତ୍ୟର ବିକାଶ ପାଇଁ ଏକ ପ୍ରକୃଷ୍ଟ ସମୟ ଥିଲା । ଏହି ସମୟରେ କବି ଗୋପାଳକୃଷ୍ଣ ପାରଳାରେ ଜନ୍ମ ଗ୍ରହଣ କରିଥିଲେ । ଅସାଧାରଣ ସାହିତ୍ୟ ସାଧନା କରି ସେ କବିତ୍ୱର ମୁଦ୍ରା ପକାଇଲେ । ଗୋପାଳକୃଷ୍ଣ ପ୍ରକୃତରେ କବି ଅପେକ୍ଷା ସଂଗୀତରେ ଥିଲେ ଜଣେ ମୂର୍ତ୍ତିମନ୍ତ ପ୍ରତୀକ । ଓଡ଼ିଆ ସାହିତ୍ୟରେ ରାଧା-କୃଷ୍ଣ ପ୍ରେମ ସମ୍ବଳିତ କଥାବସ୍ତୁକୁ ଉପଜୀବ୍ୟ କରି ସେ ଶତାଧିକ କାବ୍ୟ ରଚନା କରି ଯାଇଛନ୍ତି । ଏହି କାବ୍ୟ କବିତାମାନଙ୍କର ଭାଷା, ଶବ୍ଦ ଏତେ ସୁମଧୁର ଏବଂ ଏତେ ଲାଳିତ୍ୟପୂର୍ଣ୍ଣ ଯେ ବୈଷ୍ଣବ ସାହିତ୍ୟରେ ଏଗୁଡ଼ିକ ଏକ ଏକ ମର୍ଯ୍ୟାଦାବନ୍ତ ସ୍ଥାନ ଅଧିକାର କରନ୍ତି । ଗୋପାଳକୃଷ୍ଣଙ୍କ ରଚନାରେ ଓଡ଼ିଆ ଗୀତିକାବ୍ୟ, ଚଉତିଶା, ଚଉପଦୀ, ଭଜନ ଓ ଜଣାଣର ପ୍ରଭାବ ରହିଛି । ଗୋପାଳକୃଷ୍ଣଙ୍କ ପଦ୍ୟରେ ବୈଷ୍ଣବୀୟ ପ୍ରେମ କାବ୍ୟ ଓ ଦେଶୀୟ ପ୍ରେମ କାବ୍ୟର ବଳିଷ୍ଠ ପରଂପରା ରହିଛି । ଭକ୍ତି ରସାତ୍ମକ ସାହିତ୍ୟ ସୃଷ୍ଟି କରିବାରେ ଗୋପାଳକୃଷ୍ଣ ଥିଲେ

ସିଂହସ୍ତ ଏବଂ ତାଙ୍କର କାବ୍ୟ କବିତା ଓଡ଼ିଆ ବୈଷ୍ଣବ ସାହିତ୍ୟକୁ ଯୁଗେ ଯୁଗେ ଗରିମନ୍ତ କରୁଥିବ । 'ଗୋପାଳକୃଷ୍ଣ ପଦ୍ୟାବଳୀ, ଓଡ଼ିଆ ସାହିତ୍ୟରେ ଅମୂଲ୍ୟ ରତ୍ନ । ଗୋପାଳକୃଷ୍ଣଙ୍କ ବ୍ୟତୀତ ପାରଳାଖେମୁଣ୍ଡିର ରାଜ ଦରବାରର ଯେଉଁ କବିମାନେ ମଣ୍ଡନ କରିଥିଲେ, ସେମାନଙ୍କ ମଧ୍ୟରୁ ପଦ୍ମନାଭ ପରିଛା, ରଘୁନାଥ ପରିଛା ଓ ଗୌରହରି ପରିଛାଙ୍କ ନାମ ଉଲ୍ଲେଖଯୋଗ୍ୟ । ରଘୁନାଥ ପରିଛାଙ୍କ ରାଧାମାଧବ ବିଳାସ, ଗୌରହରି ପରିଛାଙ୍କ 'ଚୌପଦୀ ସମୂହ', ବସ୍ତ୍ରାପହରଣ ଇତ୍ୟାଦି ଏକ ଏକ ଅନବଦ୍ୟ କୃତି । ପରବର୍ତ୍ତୀ ସମୟର ଅପର୍ଣ୍ଣା ପରିଛାଙ୍କ ରାଧାକୃଷ୍ଣ ବିଷୟକ ମାନଭଞ୍ଜନ, ନବାନୁରାଗ ଇତ୍ୟାଦି ଓଡ଼ିଆ ଭକ୍ତି ସାହିତ୍ୟକୁ ପୁଷ୍ଟ କରିଛନ୍ତି ।

ଭକ୍ତି ସାହିତ୍ୟ ବ୍ୟତୀତ ଭାଷା ତତ୍ତ୍ୱ, ଜୀବନୀ, ବ୍ୟାକରଣ ପ୍ରଭୃତି କ୍ଷେତ୍ରରେ ମଧ୍ୟ ପାରଳାରେ ଜନ୍ମ ଗ୍ରହଣ କରିଥିବା ଅନେକ ପଣ୍ଡିତ ଅଦ୍ୱିତୀୟ ଗ୍ରନ୍ଥମାନ ରଚନାକରି ଉତ୍କଳର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଏମାନଙ୍କ ମଧ୍ୟରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଅଗ୍ରଣୀ ଥିଲେ । ଗୋପୀନାଥ ନନ୍ଦଶର୍ମାଙ୍କ "ଶବ୍ଦତତ୍ତ୍ୱବୋଧ ଅଭିଧାନ" ଓଡ଼ିଆ ଭାଷାତତ୍ତ୍ୱ ଏବଂ ଅନୁରୂପ କ୍ଷେତ୍ରରେ ସ୍ୱକୀୟ ସ୍ଥାନ ଅଧିକାର କରିଛି । ଓଡ଼ିଶା ଓ ଭାରତରେ କାହିଁକି ବିଶ୍ୱରେ ଏହାକୁ ଏକ ଅଦ୍ୱିତୀୟ ଗ୍ରନ୍ଥବୋଲି କୁହାଯାଏ । ନନ୍ଦଶର୍ମାଙ୍କ ଏହି ଶବ୍ଦତତ୍ତ୍ୱ ଅଭିଧାନ ରଚିତ ହେବା ପୂର୍ବରୁ ଭାରତର ଅନ୍ୟ କୌଣସି ପ୍ରାଦେଶିକ ଭାଷାରେ ଏହିଭଳି ଏକ ଗ୍ରନ୍ଥ ରଚିତ ହୋଇନଥିବା ଜଣାଯାଏ । ପଣ୍ଡିତ ନନ୍ଦଶର୍ମାଙ୍କ ପରେ ଅନ୍ୟ ଏକ ବ୍ୟକ୍ତିତ୍ୱ ୰ଶ୍ୟାମ ସୁନ୍ଦର ରାଜଗୁରୁ । ତାଙ୍କ ପ୍ରଣୀତ "ପ୍ରବନ୍ଧାବଳୀ" ଅନ୍ୟ ଏକ ଉପାଦେୟ ଗ୍ରନ୍ଥ । ୰ଶ୍ୟାମ ସୁନ୍ଦର ରାଜଗୁରୁ ଉତ୍କଳ ଭାଷାର ଭିତ୍ତିସ୍ଥାପନ ପାଇଁ ଚେଷ୍ଟିତ ଥିଲେ ଓ ତାହାର ଯଥାର୍ଥ ପରିପ୍ରକାଶ ଏହି ପ୍ରବନ୍ଧାବଳୀ । ପ୍ରବନ୍ଧାବଳୀ ଓଡ଼ିଆ-ଆଲୋଚନା ସାହିତ୍ୟରେ ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ । ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ସାହିତ୍ୟର ଇତିହାସ, ଓଡ଼ିଆ ଛନ୍ଦର ଇତିହାସ ବିଷୟରେ ଏହା ଏକ ଗୌରବୋଜ୍ଜ୍ୱଳ ଅବଦାନ । ଅପେକ୍ଷାକୃତ ଅଳ୍ପ ବୟସରେ ଅନ୍ୟ ଏକ ପ୍ରତିଭା ଥିଲେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । ସାହିତ୍ୟର ଜଣେ ନିରବଚ୍ଛିନ୍ନ ସାଧକଭାବେ ସେ ଜୀବନ କଟାଇ ଦେଇଥିଲେ । ଜୀବନୀ ଲେଖକଭାବେ ସେ ତାଙ୍କର ସାହିତ୍ୟ ସାଧନା ଆରମ୍ଭ କରି ଓଡ଼ିଆ ସାହିତ୍ୟ ସଂକଳନରେ ହାତ ଦେଇଥିଲେ । "ଓଡ଼ିଆ ସାହିତ୍ୟର ପରିଚୟ" ପୁସ୍ତକ ଲେଖିବା ପରେ ପ୍ରଧାନତଃ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତା ଭାବରେ ତାଙ୍କୁ ସମସ୍ତେ ଜାଣିଲେ । ଷଡ଼ିଶଖଣ୍ଡରେ ପ୍ରକାଶିତ ଏହି ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଏକ ପ୍ରାମାଣିକ ଓ ଉଜ୍ଜ୍ୱଳ ଇତିହାସ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏତାଦୃଶ ଅନେକ ପ୍ରତିଭା ପାରଳାରେ ବିକଶିତ ହୋଇଥିଲ ।

ପାରଳାରେ ଜନ୍ମଗ୍ରହଣ କରିଥିବା ନାଟ୍ୟକାରମାନଙ୍କ ସୃଷ୍ଟିରେ ଓଡ଼ିଶା ନାଟ୍ୟ ସାହିତ୍ୟ ମଞ୍ଜୁଳ। ଷୋଡ଼ଶ ଶତାବ୍ଦୀର କବିରତ୍ନ ପୁରୁଷୋତ୍ତମ ମିଶ୍ର ଅନର୍ଘରାଘବ ନାଟକର ଟୀକା ରଚନା କରିଥିଲେ । ସ୍ୱର୍ଗୀୟ ପଦ୍ମନାଭ ଗଜପତି ନାରାୟଣ ଦେବ ନିଜେ ଜଣେ ନାଟ୍ୟକାର ଥିଲେ । ତାଙ୍କ ବିରଚିତ ନାଟକମାନଙ୍କ ମଧ୍ୟରେ ଧ୍ରୁବ, ଚନ୍ଦ୍ରାବତୀ ସ୍ୱୟଂବର, ବାଣା, ଦର୍ପଦଳନ ପ୍ରଭୃତି ନାଟକ ଉଲ୍ଲେଖନୀୟ । ରାମଶଙ୍କର ରାୟଙ୍କୁ ଓଡ଼ିଆ ପୂର୍ଣ୍ଣାଙ୍ଗ ନାଟକର ସର୍ବପ୍ରଥମ ରଚୟିତା ବୋଲି ଅଭିହିତ କରାଗଲେ ହେଁ, ତାଙ୍କର ଯଥେଷ୍ଟ ପୂର୍ବରୁ ପାରଳାଖେମୁଣ୍ଡିର କବିଚନ୍ଦ୍ର ରଘୁନାଥ ପରିଛା ଓଡ଼ିଆ ଭାଷାର ପ୍ରଥମ ନାଟକ ରଚନା କରିଥିଲେ । ଏହି ନାଟକଟି ୧୮୬୮ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲ । ରଘୁନାଥ ପରିଛାଙ୍କର 'ଗୋପୀବଲ୍ଲଭ' ନାଟକ ଓଡ଼ିଆ ଭାଷାର ପ୍ରଥମ ନାଟକ ବୋଲି କହିବା ପଛରେ କେତୋଟି ବଳିଷ୍ଠ ମତ ରହିଛି । ଅଷ୍ଟାଦଶ ଶତାବ୍ଦୀରେ ରାଧାକୃଷ୍ଣଲୀଳା, ଭାରତଲୀଳା ଓ ରାମଲୀଳା ପ୍ରଭୃତି ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ବିଶିଷ୍ଟ ବିଭାଗରୂପେ ପରିଗଣିତ ହେଉଥିଲ । ଭାଷାର ଆଡ଼ମ୍ବର, ଛନ୍ଦର ନୂତନତା, ଓ ଶାସ୍ତ୍ରୀୟ ପାଣ୍ଡିତ୍ୟର ପରିବେଶ ମଧ୍ୟରେ ଟୀରପରିଶୀଳିତ ରାଧାକୃଷ୍ଣଲୀଳାକୁ ରୂପାୟିତ କରିବା ପାଇଁ ରଘୁନାଥ ପରିଛାଙ୍କର ଏହି ଉଦ୍ୟମ ଗୋପୀବଲ୍ଲଭ' ନାଟକ ନାମରେ ପରିଗୃହୀତ । ଗୋପୀବଲ୍ଲଭ" ଭିନ୍ନ ରଘୁନାଥ ପରିଛାଙ୍କ ଅନ୍ୟ ନାଟ୍ୟ ଗ୍ରନ୍ଥ ରହିଛି । ଯଥା ବାସୁଦେବ ନାଟକ, କୃଷ୍ଣଚନ୍ଦ୍ରମା ନାଟକ ଏବଂ ଲକ୍ଷଣ ଚନ୍ଦ୍ରୋଦୟ ଇତ୍ୟାଦି । ଊନବିଂଶ ଶତାବ୍ଦୀର ନାଟ୍ୟକାର ଯେଉଁମାନେ ପାରଳାରେ ଆବିର୍ଭାବ ହୋଇଥିଲେ, ସେମାନଙ୍କ ମଧ୍ୟରେ ସୀମାଦ୍ରୀ ପଟ୍ଟନାୟକ ଅନ୍ୟତମ । ସେ 'ପୃଥ୍ୱୀରାଜ ନାଟକ', 'ସତାପରୁଦ୍ର ନାଟକ' ଆଦି ରଚନା କରିଛନ୍ତି ।

ନାଟକ ଭିନ୍ନ ନୃତ୍ୟରେ ପାରଳାର ପ୍ରସିଦ୍ଧି ରହି ଆସିଛି । ଆଜକୁ ପ୍ରାୟ ପଚାଶ ଷାଠିଏ ବର୍ଷ ତଳେ ପାରଳାଖେମୁଣ୍ଡିର "ସଖୀନାଚ" ଓଡ଼ିଶାରେ ଖୁବ୍ ନାଆଁ କରିଥିଲ । ୰ଶ୍ୟାମସୁନ୍ଦର ରାଜଗୁରୁଙ୍କ ଭାତୃସ୍ପୁତ୍ର ଲକ୍ଷ୍ମଣ ରାଜଗୁରୁ, ସୀମାଞ୍ଚଳ ପାଢ଼ୀ ଏବଂ ଅର୍ଜ୍ଜୁନ କର ପ୍ରଭୃତିଙ୍କ ନେତୃତ୍ୱରେ ଏକ ସଖୀନାଚ ଦଳ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବୁଲି ସଖୀନାଚ ପ୍ରଦର୍ଶନ କରୁଥିଲେ । ଓଡ଼ିଶା ବାହାରେ ଓଡ଼ିଶୀ ସଂସ୍କୃତିର ଏହି ବିଭାଗସହ ଲୋକଙ୍କୁ ପରିଚିତ କରାଇବାରେ ଏମାନଙ୍କ ଅବଦାନ ଅବିସ୍ମରଣୀୟ ।

ଓଡ଼ିଶାର ସଂଗୀତ ଶାସ୍ତ୍ରକୁ ପାରଳାର ବହୁମୂଲ୍ୟ ଅବଦାନ ରହିଛି । ଆନୁମାନିକ ୧୬୨୬ରୁ ୧୬୪୪ ଖ୍ରୀଷ୍ଟାବ୍ଦ ମଧ୍ୟରେ କବିରତ୍ନ ପୁରୁଷୋତ୍ତମ ମିଶ୍ର 'ସଂଗୀତ ନାରାୟଣ' ନାମକ ଖଣ୍ଡିଏ ଉପାଦେୟ ଗ୍ରନ୍ଥ ରଚନା କରିଥିଲେ । ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଗଜପତି ନାରାୟଣ ଦେବ କେତେ ଖଣ୍ଡ ସଂଗୀତ ଗ୍ରନ୍ଥ ରଚନା କରି ସଂଗୀତ ଶାସ୍ତ୍ରର ପ୍ରଭୂତ ଉପକାର କରିଯାଇଛନ୍ତି । ସେହି ଗ୍ରନ୍ଥମାନଙ୍କ ମଧ୍ୟରୁ "ସଂଗୀତ ନାରାୟଣ" ଅନ୍ୟତମ । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ପାରଳାଖେମୁଣ୍ଡିରେ ବହୁ ସଂଗୀତଜ୍ଞ ଜନ୍ମ ଗ୍ରହଣ କରିଥିଲେ । ସେହି ସମୟରେ ପାରଳାରେ ରାଜା ଦ୍ୱିତୀୟ ଜଗନ୍ନାଥ ନାରାୟଣ ଦେବଙ୍କ ଆଗ୍ରହ, ଅନୁରାଗ ଓ ପ୍ରେରଣାରେ ସଂଗୀତ ଚର୍ଚ୍ଚାରେ ମୁକୁଳିଛି ପଡ଼ିଥିଲ ଏବଂ ଏହା ଏକ ଉନ୍ନତ ପର୍ଯ୍ୟାୟରେ ଉପନୀତ ହୋଇଥିଲ । ତତ୍କାଳରେ ପାରଳାକୁ ଛାଡ଼ିଦେଲେ ଓଡ଼ିଶାର କୁତ୍ରାପି ବିଧିବଦ୍ଧଭାବେ ଶାସ୍ତ୍ରାନୁମୋଦିତ ସଂଗୀତ ଚର୍ଚ୍ଚା କିମ୍ବା ସାଧନା ହେଉନଥିଲ । ଏହି କାରଣରୁ କବିସୂର୍ଯ୍ୟ ବଳଦେବ ରଥ ମଧ୍ୟ ପାରଳାଖେମୁଣ୍ଡି ଯାଇ ସଂଗୀତ, ତାଳ ଓ ଏହାର

ଅନ୍ୟ ବିଶ୍ବକମାନ ଶିକ୍ଷା କରୁଥିଲେ । ଶାସ୍ତ୍ର ରଚନା କ୍ଷେତ୍ରରେ ରଘୁନାଥ ପରିଚ୍ଛା ଓ ଗୌରହରି ପରିଚ୍ଛାଙ୍କ ନାମ ଉଲ୍ଲେଖଯୋଗ୍ୟ । ଗୌରହରିଙ୍କର କର୍ଣ୍ଣାଟୀ ସଂଗୀତରେ ସମଧିକ ପ୍ରବେଶ ଥିଲା । ଗୌରହରିଙ୍କ ଉଦ୍ୟମରେ ଲୟ, ତାଳ, ଛନ୍ଦ ସାହାଯ୍ୟରେ ଦାକ୍ଷିଣାତ୍ୟ ସଂଗୀତର କେତେକ ବିଭାବ ଓଡ଼ିଶୀ ସଂଗୀତ ଭିତରକୁ ଆସିବା ଫଳରେ ଏହାର ପରିଣତି ପୁଷ୍କଳ ହୋଇଥିଲା । ଯାହାଙ୍କ ପଦ୍ୟାବଳୀରେ ଓଡ଼ିଶାର ସଂଗୀତ ଓ ଭକ୍ତି ସାହିତ୍ୟ ସଫଳତାର ଶୀର୍ଷତମ ପର୍ଯ୍ୟାୟରେ ପହଞ୍ଚିଥିଲା, ସେ ଥିଲେ କବି ଗୋପାଳକୃଷ୍ଣ । କବିତ୍ବ ଓ ସାଂଗୀତିକତାର ଅପୂର୍ବ ସମାବେଶ ଘଟିଥିଲା ଗୋପାଳକୃଷ୍ଣଙ୍କ ଠାରେ । "ଗୋପାଳକୃଷ୍ଣ ପଦ୍ୟାବଳୀ" ଓଡ଼ିଆ ଭକ୍ତି ସାହିତ୍ୟ ଓ ସଂଗୀତ ସାହିତ୍ୟର ଏକ ମୂର୍ତ୍ତ ନିଦର୍ଶନ । ବିଭିନ୍ନ ରାଗ-ରାଗିଣୀ, ତାଳ-ଲୟର ପରିପ୍ରକାଶ ପାଇଁ ଆଲୋଚ୍ୟ ଗ୍ରନ୍ଥଟି ଗୌରବାବହ ସ୍ଥାନ ଅଧିକାର କରେ । ଗୋପାଳକୃଷ୍ଣଙ୍କ ସଂଗୀତ ରଚନା ବହୁ ବିଭବପୂର୍ଣ୍ଣ । ଗୋପାଳକୃଷ୍ଣଙ୍କ ସଂଗୀତର ସରଳତା, ସାବଲୀଳତା ଓ ହୃଦୟଗ୍ରାହୀତାର ପଟାନ୍ତର ନାହିଁ । ଗୀତରେ ଶତାଧିକ ରାଗ ରାଗିଣୀ ଓ ତତୋଧିକ ତାଳର ଅପୂର୍ବ ସଂଯୋଜନା ଗୋପାଳକୃଷ୍ଣଙ୍କ ସଂଗୀତ ପ୍ରତିଭାର ଜ୍ବଳନ୍ତ ପ୍ରତୀକ ।

ତତ୍କାଳୀନ ଓଡ଼ିଶାର ଏକ ସମୃଦ୍ଧ ସାମରିକ ପରଂପରା ଥିଲା । ଅଦ୍ୟାବଧି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପାଇକ ଆଖଡ଼ାର ଯେଉଁ ମିଞ୍ଜିମିଞ୍ଜି ଆଲୁଅ ଜଳୁଛି ସେସବୁ ଏଇ ସାମରିକ ପରଂପରାକୁ ଦିନେ ପୁଷ୍ଟ କରୁଥିଲା । ପାରଳାଖେମୁଣ୍ଡିର ପାଇକ ପରଂପରା ଅନନ୍ୟ ସାଧାରଣ । ଓଡ଼ିଶାର 'ଚଣ୍ଡେଇ' ନୃତ୍ୟର ଏକ ଅଭିନ୍ନ ଓ ମୌଳିକ ରୂପ ପାରଳାର ପାଇକ ବଂଶର ବୀରଙ୍କଠାରେ ଦେଖିବାକୁ ମିଳେ । ଓଡ଼ିଆର ବୀରତ୍ବ ଯେ ତାକୁ କେବଳ ଗୋଟିଏ ଦୁର୍ଦ୍ଧର୍ଷ, ସାହସିକ ଓ ସମରପ୍ରିୟ ଜାତି ରୂପେ ପ୍ରତିଷ୍ଠା କରିଥିଲା ତାହା ନୁହେଁ, ଓଡ଼ିଶାର ରାଜନୈତିକ ଓ ଭୌଗୋଳିକ ସୀମାକୁ ସଂପ୍ରସାରିତ କରିବା ସଙ୍ଗେ ସଙ୍ଗେ ଏହାର ଅଭିନବତ୍ବକୁ ପ୍ରତିପାଦିତ କରୁଥିଲା । ଏଣୁ ଓଡ଼ିଆଙ୍କୁ କୁହାଯାଏ "କଳିଙ୍ଗାଃ ସାହସିକାଃ" । ଏହି ସାହସିକତା ଓ ବୀରତ୍ବର ସଙ୍କେତ ପାରଳାର ପାଇକାଳୀମାନେ ଆଜି ମଧ୍ୟ ବହନ କରି ଚାଲିଛନ୍ତି ।

ପରୋକ୍ଷଭାବେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦାନ ଅବିସ୍ମରଣୀୟ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧି ପାଇଁ ମହାରାଜା ପଣ୍ଡିତ, କବି, ଗ୍ରନ୍ଥକାରମାନଙ୍କୁ ଅଦମ୍ୟ ପ୍ରେରଣା ଯୋଗାଇ ଥିଲେ । ଓଡ଼ିଆ ସାହିତ୍ୟର ବିକାଶ ପାଇଁ ସାହିତ୍ୟିକମାନଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ । ସାହିତ୍ୟର ଛବିରକୁ ଲୋକ ଲୋଚନକୁ ଆଣିବା ପାଇଁ ପାରଳାରେ ଗଜପତି ପ୍ରେସର ପ୍ରତିଷ୍ଠା ତାଙ୍କର ଆଉ ଏକ ବହୁମୂଲ୍ୟ ଦାନ। ଲେଖକମାନଙ୍କୁ ଆର୍ଥିକ ଅନୁଦାନ ଦେଇ ମହତ୍ତ୍ବପୂର୍ଣ୍ଣ କାର୍ଯ୍ୟସମ୍ପାଦନ କରିଥିଲେ । ଗୋପୀନାଥ ନନ୍ଦଶର୍ମାଙ୍କ ଭାଷାତତ୍ତ୍ବ, ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ଭାଷାକୋଷ, ଜଗବନ୍ଧୁ ସିଂହଙ୍କର 'ପ୍ରାଚୀନ ଉତ୍କଳ ଏବଂ ଚିନ୍ତାମଣି' ମହାନ୍ତିଙ୍କ 'ପାରଳା ଦର୍ଶନ' ଇତ୍ୟାଦି ସାହିତ୍ୟ କୃତିର ସଫଳ ଆତ୍ମ ପ୍ରକାଶ ଏହି ଆର୍ଥିକ ସାହାଯ୍ୟରୁ ହିଁ ସମ୍ଭବ ହୋଇ ପାରିଥିଲା । ରାଜାଙ୍କର ଅନୁଦାନକୁ ସ୍ମରଣ କରିବା ପାଇଁ ଯାଇ ଓଡ଼ିଶା ହାଇକୋର୍ଟର ତତ୍କାଳୀନ ବିଚାରପତି ମାନ୍ୟବର ଶ୍ରୀଯୁକ୍ତ ଅଭିମନ୍ୟୁ ମିଶ୍ର ମହାରାଜାଙ୍କର ଅଷ୍ଟ-ସପ୍ତତିତମ ଜନ୍ମ ବାସରରେ ଦେଇଥିବା ଉଦବୋଧନ :

MANY REPRESENTING THE I NDIAN ARISTOCRACY HAVE PASSED AWAY AND MANY WILL PASS INTO OBLIVION BUT A FEW LIKE THE MAHARAJA SAHEB, I AM SURE, WILL PASS INTO HISTORY WHICH WILL RECORD IN GOLDEN LETTERS FOR ALL TIME, HIS GREATNESS, MAGNANIMITY AND HIS NOBLE DEED ALL DIRECTED TOWARDS THE WELFARE OF THE PEOPLE.

କବି ଓ ନାଟ୍ୟକାରଙ୍କ ବ୍ୟତୀତ ପାରଳାରେ ଜନ୍ମ ନେଇଛନ୍ତି ବିଶିଷ୍ଟ ଐତିହାସିକ ସତ୍ୟନାରାୟଣ ରାଜଗୁରୁ । ଓଡ଼ିଶାର ଇତିହାସ ପ୍ରଣୟନ କ୍ଷେତ୍ରରେ ଡଃ ରାଜଗୁରୁ କେତେକ ସ୍ଥାୟୀ ଏବଂ ନୂତନ ଦିଗ୍‌ଦର୍ଶନ ଦେଇଅଛନ୍ତି । ତାଙ୍କର ଅସଂଖ୍ୟ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଯାହା ତାଙ୍କର ଇତିହାସ ଚର୍ଚ୍ଚାର ଅପୂର୍ବ ନିଦର୍ଶନ । ଶ୍ରୀଯୁକ୍ତ ରାଜଗୁରୁଙ୍କ ରଚିତ History of the Gangas ଓଡ଼ିଶା ଇତିହାସର ଏକ ଆଲୋକ ବର୍ତ୍ତିକା । ଏଥିରେ ଯେତେ ତଥ୍ୟ ସମ୍ବଳିତ ବିବରଣୀ ସନ୍ନିବେଶିତ ହୋଇଛି, ତାହା ଯେ କେତେ ଅଧ୍ୟବସାୟ ଓ ସାଧନାର ଫଳ ତାହା କଳ୍ପନା କରିବା କଷ୍ଟକର ।

ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କରିବାକୁ ଗଲେ ପାରଳାଖେମୁଣ୍ଡିର ଅପ୍ରଶସ୍ତ ଭୌଗୋଳିକ ସୀମା ଭିତରେ ଯେଉଁ କେତେଜଣ କବି, ସଙ୍ଗୀତଜ୍ଞ, ନାଟ୍ୟକାର, ଗ୍ରନ୍ଥ-ପ୍ରଣେତା, ଜ୍ୟୋତିଷ-ଶାସ୍ତ୍ର ବିଶାରଦ, ସାହିତ୍ୟିକ, ପଣ୍ଡିତ, ମନୀଷୀ, ଚିନ୍ତାଶୀଳ ଲେଖକ ଜନ୍ମ ଲାଭ କରି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧଶାଳୀ କରିଯାଇଛନ୍ତି, ତାହା ଅନ୍ୟତ୍ର ବିରଳ । ସୁତରାଂ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ପାଇଁ ପାରଳାର ଦାନ ଅବିସ୍ମରଣୀୟ ଏବଂ ଅତୁଳନୀୟ ।

ଟାଇପ୍-୩, ନଂ—୬୧
ମଧୁବନ
ପାରାଦୀପ ପୋର୍ଟ,
କଟକ ।

# ବିସ୍ମୃତ ଆକାଶ

ଶ୍ରୀମତୀ ବୀଣାପାଣି ମହାନ୍ତ

ବର୍ଷାକୁ ଅନାଇ ମକୁନ୍ଦ ଚମକି ପଡ଼ିଲା । ଏମିତି ମୂଷଳ-ଧାରରେ ବର୍ଷିବା ଖୁବ କ୍ୱଚିତ ଦେଖିଛି ସେ । ପିଲାଦିନେ ଶୁଣିଛି ଏମିତି ଚାରିଦିନ ଧରି ଲଗାଣ ବର୍ଷାହେଲା ଯେ ଗାଁ ର ସବୁଯାକ ଘର ଭାଙ୍ଗି ଚୁରମାର ହୋଇଗଲା । ସକାଳୁ ସମସ୍ତେ ଘରେ ବସି ରହିଥିଲେ ଯେ ସଞ୍ଜକୁ କେହି କାହାର କଥା ଶୁଣି ପାରିଲେନି, ଏପରି ଡାକ ସେ ଘରକୁ ଶୁଭିଲାନି । ଶେଷକୁ ଯେତେବେଳେ ରାତି ଅଧରେ ଫେରୁଥିବା କୁ, କୁ କାହଣା ସମସ୍ତଙ୍କ କାନକୁ ଶୁଭିଲା, ଉଠି ପକେଇ ଠାକୁରଙ୍କୁ ଡ଼ାକି ସମସ୍ତେ, ଭେ, ଭେ ହୋଇ କାନ୍ଦିଲେ । ଏମିତି କାନ୍ଦିଲେ ଯେ ବର୍ଷାପାଣିଠୁ ଲୋକଙ୍କ ଆଖିର ପାଣି ବେଶୀ ହୋଇଗଲା ! ଠାକୁର ବୋଧହୁଏ ସବୁରି ଲୁହ ପାଣିରେ ଉବୁଟୁବୁ ହୋଇ ବର୍ଷା ବନ୍ଦକରି ଦେଇଥିଲେ । ଚତୁର୍ଥ ଦିନ ସକାଳକୁ ଭାଙ୍ଗି ପଡୁ ପଡୁ ଅନ୍ୟ ସାଇର ଘରଗୁଡ଼ାକ କୌଣସିମତେ ଟେକି ହୋଇ ରହିଗଲା, ମାତ୍ର ଠାକୁରଙ୍କ ଚଉସୀମାରୁ ଦୂରରେ ଥିବା ହରିଜନ ବସ୍ତିର ସବୁଘର ଭାଙ୍ଗି ମାଟିରେ ମିଶିଯାଇଥିଲା । ମୁକୁନ୍ଦ ସେଥିପାଇଁ ଅନେକ ସମୟରେ ଭାବେ କେଜାଣି ପରେ ସେମାନେ କାହିଁକି ଠାକୁରଙ୍କୁ ଗାଳିକରି ଡାକିଲେନି, ବର୍ଷାଠାରୁ ଅଧିକପାଣି ଆଖିରୁ ଢାଳିଲେ ନାହିଁ । କେତେ କେତେଥର କହିଥିବେ ଗତଜନ୍ମରେ ବହୁ ପାପକଲେ ଅଛୁଆଁ ହୋଇ ମଣିଷ ଜନ୍ମ ହୁଏ, ଅଛୁଆଁଙ୍କ କଥା ଭଗବାନ ଶୁଣନ୍ତି ନାହିଁ, ତାଙ୍କୁ ନାନାଆଡୁ ଶାସ୍ତି ଦେଇ ଶେଷକୁ ଆରଜନ୍ମରେ ଉଚ୍ଚକୁଳରେ ଜନ୍ମ ଦିଅନ୍ତି, ଆଉ ତାପରେ ସେମାନଙ୍କର ମୋକ୍ଷ ହୁଏ । ପିଲାଦିନର ଏଇ ଘୋଷରା କଥାଟା ମୁକୁନ୍ଦ ମନରେ ଅନେକ ସମୟରେ ନାନା ପ୍ରଶ୍ନ ଉଠେଇଥିଲା, ଠାକୁରଙ୍କ ଉପରେ ତାର କିପରି ଏକ ପ୍ରଚଣ୍ଡ ଅଭିମାନ ଆସି ଯାଉଥିଲା । ହେଲେବାପା କି ତାଙ୍କ ବୟସର ଲୋକଙ୍କ ଅଭିଜ୍ଞତା ଓ ସ୍ୱୀକାରୋକ୍ତିକୁ ଖଣ୍ଡନ କରିବାକୁ ତାର ଶକ୍ତି କି ଯୁକ୍ତି ନଥିଲା । ହେଲେ ସେସବୁ କଥାରେ ମନ ତାର ବିଦ୍ରୋହ କରି ଉଠିଥିଲା ।

ଆଜିଆଉ ସେମିତି ବର୍ଷା ହେବ ନାହିଁ ତ ? ଖାଲଟା ଏଥର ଭଲକରି ଛାଉଣି କରି ପାରିଲାନି ସେ । ବାଉଁଶ ନଡ଼ାର ଦାମ କାହିଁରେ କେତେ ହେଲାଣି । ଗଜା ମାରୁଥିବା ଧାନକୁ ଚାହିଁ ମନରେ ଆଶାହେଉଛି କେଜାଣି ଫସଲ ଭଲହେଲେ ସେ ଘରଟାକୁ ଭଲକରି ଛିଡ଼ା କରେଇ ଦେବ । ଏଣେତ ଦିନରାତି ଯେତେକାମ କଲେବି ଘରକୁ କିଛି ଅଣ୍ଟୁନି, ତେହିଁକି ପୁଅଟାକୁ ଆଉ କଲେଜରେ ରଖି ପାଠ ପଢ଼ାଉଛି ଯେ, ଯେତେ ଟଙ୍କା ତାକୁ ପଠେଇଲେ ବି ଅଣ୍ଟୁନି । ଟିକିଏ ବାପ ଅବସ୍ଥାକୁ ଚାହିଁ କଷ୍ଟକରି ଚଳ, ନାହିଁ ସେକଥା ହେବ ନି । କଲେଜ ପାଠ ପଢ଼ାରେ ସେମିତି କାଣ୍ଡିକୁଣ୍ଡି ହେଲେ ଭୁଆଡ଼େ ପାଠ ହୁଏନି । କେତେ ବଡ଼ଲୋକିଆ ପିଲାଙ୍କ ସଙ୍ଗେ ଉଚ୍ଚଜାତିର ପିଲାଙ୍କ ସଙ୍ଗରେ ମେସ୍‌ରେ ଏକାଠି ରହି ସେ ପାଠ ପଢୁଛି । ସେମାନେ ତାକୁ ହରିଜନ ପିଲାକହି ହସରେ ଉଡ଼େଇଦେବେ ଯଦି ସେ ସେମିତି ପେଟମଣ୍ଡ ମାରିବନେ । ସେଇଥିପାଇଁ ଧାର କରଜକରି ତିନିବର୍ଷ ମୁକୁନ୍ଦ ଘରକଥା ପଛକେ ପକାଇ ପୁଅକୁ ଟଙ୍କା ପଠେଇ ଚାଲିଛି । ଟିକେ ଡେରିହେଲେ ମୁକୁନ୍ଦର ବାବାବୋଲ ବଦଳେ ଉଠେଇ ଦେବେନି, ନିଜ ସ୍ତ୍ରୀ ଅଣିଆ ଅପିଆ ମୁହଁ ମାଡ଼ି ଶୋଇବ । ତେଣେ ଟୋକାଟା ଟେଲିଗ୍ରାମ୍ ଉପରେ ଟେଲିଗ୍ରାମ୍ ପଠେଇ ମୁକୁନ୍ଦର କଲିଜାକୁ ପାଣି କରିଦେବ ।

କୋଉକଥା ଉଲୁ କିଏ ଶୁଣୁଛି ? ମୁକୁନ୍ଦ ପୁଣି ଥରେ ଆକାଶକୁ ଅନେଇଲା, ରାତି କୋଉରେ ମେଘ ଧରିଛି ଗୁରିଆଡ଼େ। ଘଡ଼ା ଅନ୍ଧାର, ମୁହଁକୁ ମୁହଁ ଦିଶୁନି । କଖାରୁ ଦିଟା ଧରି ହାଟକୁ ପାଉଥିଲା ଦିକୋଶ । ହେଲେ ଗୋଟାଏ ବି ଗରାଖ କିଣିବାକୁ ଆସିଲେନି । କଖାରୁ ବିକି ସୁବିଧା ହେଲେ ଚୁନ୍ଗୁଡ଼ି ମାଛ ଦିଟା ସଙ୍ଗରେ ନେବାକୁ ବୋଉ କହିଥିଲା କାହିଁକିନା, ନୋଉ ସାଙ୍ଗପିଲା ହାତରେ ଟୋକାଟା ଖବର ପଠେଇଥିଲା ଘରକୁ ଆସିବ ଆଜି । ଏକାନ୍ତୁହେଁ, ଆଉ କିଏ କ୍ଷଣେପରେ ଆସିବେ................।

ଜାନଫଟେଇ ଘଡ଼ଘଡ଼ିଟା ମାରିଦେଲା । ଆଖି ପାଖଦେଇ ଯେମିତି ନିଆଁ ହୁଳାଟା ଗଳିଗଲା ଛାତିମୁଣ୍ଡ ଝଲସେଇ ! ଥୁ ଥୁ, ଛେପ ପକେଇଲା ମୁକୁନ୍ଦ ନିଜ ଛାତିରେ । ଚାଳିଶ ବର୍ଷ ବୟସରେ ବି ତାକୁ ଏମିତି ଛାନିଆ ଲାଗୁଛି କାହିଁକି କେଜାଣି ! କେଳେଠାରୁ ଶୁଣିଥିବା ଲଗାଣବର୍ଷାର କାହାଣୀ ଆଖିରେ ନଦେଖିଲେ ବି ମନରେ ସେମିତି ଗୋଟାଏ ଆତଙ୍କ କୋଉଠି ଲୁଚେଇ ରଖିଦେଇଛି । ଘନ ଅନ୍ଧାରିଆ ଘମାଟ ମେଘ ଦେଖିଲେ ମୁକୁନ୍ଦ କେବଳ ସେହି କଥା ଭାବି ଡରିଯାଏ । ସେତ ଭଲକରି ଜାଣିଛି ଠାକୁର ଗରିବ ଦୁଃଖୀକୁ ଅନାନ୍ତି ନାହିଁ । ସେମାନେ ବି ଏମିତି ସମୁଦ୍ର ପ୍ରମାଣ ଲୁହ ଢାଳିପାରିବେନି । ନିତିକାନ୍ଦୁଥିବା ଲୋକର ଆଖିରେ ଲୁହ କେଉଁଠୁ ଏତେ ଆସିବଯେ ? ବଡ଼ ଲୋକ ସିନା ଦନେ ଅଧେ କାନ୍ଦିବେ ଆଉ ସେ କାନ୍ଦରେ ଦେବତା-ମାନେ ତରଳିଯିବେ ।

କାନ୍ଥଟା ଦରଜ ହୋଇ ଗଲଣି । କଣ୍ଟାରୁ ଝୁଲିଥିବା ତଳେଥୋଇ ଗାମୁଛାଟା ଖୋଲି ସେ ମୁହଁରୁ ଝାଳ ପୋଛିଲା । ଆଜିକାଲି ତାକୁ ସବୁବେଳେ ଦୁର୍ବଳ ଲାଗୁଛି । ଗୋଡ ଭଙ୍ଗାଟାରେ ଆବୁପରି ଫୁଲଟାଏ ଓହଳି ପଡ଼ିଲାଣି । ବେଶୀ ଚାଲିଲେ ଦରଜ ହେଉଛି । କବିରାଜ କହୁଥିଲେ ଚିକିତ୍ସା ନକଲେ ଗୋଦର ହୋଇଯିବ । ହେଲେ ଦେବ । ଆଉମୁକୁନ୍ଦ କ'ଣ କରିବ ? । ଯାହାତା'ର କପାଳରେ ଲିଖନ, ଅଦୃଷ୍ଟରେ ଅଛି ସେ ଭୋଗ-କରିବ । ନୀଚ ଜାତିରେ ଜନ୍ମହେଲେ କେତେ କଷ୍ଟ ଭୋଗ କରିବ ବୋଲି ଜେଜେ ବାରମ୍ବାର କହୁଥିଲେ । କିନ୍ତୁ ଜେଜେ ଅମଳ କଥା ଭିନ୍ନ ଥିଲା । ଏବକୁତ କେତେ ସୁବିଧା ସରକାର କରିଦେଲେଣି । ପାଠ ପଢ଼ିବାକୁ, ଜମିକିଣି ଘର କରିବାକୁ ସୁଆ ଦେଇଷଣକୁ ଋଣ ବ୍ୟବସ୍ଥା ହେଲାଣି । ସିଇଦିନେ ବ୍ରାହ୍ମଣ କି କରଣ ଘର ସାଇରଲୋକେ ତାଙ୍କ ସାଇକୁ ମୋଟେ ଆସୁ-ନଥିଲେ । ଭଲମନ୍ଦରେ ପଶୁରୁନଥିଲେ । ଖାଲି କାଙ୍ଗାଳି ଭୋଜନ କି ନମିଉ ପର୍ବରେ ଡାକି ପଛପଟେ ପତରପକେଇ ଖାଇବାକୁ ଦେଉ ଥିଲେ । ଆଜି ସେକଥା ନାହିଁ, ଏକାଠି ନଖାଇଲେବି ଟିକେ ଛାଡ଼ି ବସା ଉଠା ଖିଆପିଆରେ କିଛି ବାଧା ନାହିଁ । ଗଲବର୍ଷ ଭୋଟ ହେଲାବେଳେ ସରପଞ୍ଚ ବ୍ରାହ୍ମଣ ହେଲେବି ମୁକୁନ୍ଦଘରେ ବସି ଘଣ୍ଟାଏ କାଳ ସେମାନଙ୍କୁ ବୁଝେଇଥିଲା କାହାକୁ ଭୋଟଦେଲେ କ'ଣ ହେବ ।

ହେଲେ ବର୍ଷା ବତାସିକି କୋଉ ସରପଞ୍ଚ କି କୋଉ ସରକାର ରୋକିପାରୁ ନାହାନ୍ତି । ଯେମିତି ଯେତେପାଠଶାଠ ପଢ଼ି ଯୋଗ୍ୟହୋଇ ପୁଅ ଛିଡାହେବାକୁ ଯାଉଥିଲେବି ଉଚ ଜାତିର ବାବୁଙ୍କା ଛଡଉ। ପିଲାଙ୍କ ବାପମାନଙ୍କ ମୁହଁକୁ ଅନେଇ ମୁକୁନ୍ଦ କଥାକହି ପାରୁନି କି ତାଙ୍କ ଘର ବାରଣ୍ଡାରେ ବସିପାରୁନି । କାହିଁକି ? ଆକାଶରେ ବର୍ଷା ଯେମିତି ଆତଙ୍କ, ଠାକୁର ପିଣ୍ଡା, ଉଚ୍ଚଜାତି ସେମିତି ତା ମନରେ ଆତଙ୍କ ସୃଷ୍ଟିକରି ଚାଲିଛି । ହେଲେ ସେ ଦବିଯାଉ ନାହିଁ । ପୁଅ ବଡ଼ଚାକିରୀ କରି ସହରରେ ରହିଲେ ସବୁକଥା ଆପଣାଛାଏଁ ବଦଳି ଯିବ ।

ଏ କ'ଣ ? ବର୍ଷା ପଡିଲାଣି ଯେ ! ତରତର ହୋଇ ସେ ଧାଇଁବାକୁ ଲାଗିଲା ଟୋକେଇଟା ମୁଣ୍ଡରେ ଥୋଇ । ସଙ୍ଗେ ସଙ୍ଗେ ଗଜ ଗଜ ହୋଇ ବର୍ଷା ପଡିବାକୁ ଲାଗିଲା । ମୁକୁନ୍ଦର ମନେ-ହେଲା ସତେଯେମିତି ଐରାବତହସ୍ତୀ ପାଟି ମେଲିକରି ଇନ୍ଦ୍ରର ଭଣ୍ଡାର ଲୁଟିଆଣି ଢାଳି ଦେଇ ଯାଉଛି । ବିଜୁଳି ଘଡଘଡି ଭିତରେ ଅଣନିଃଶ୍ୱାସୀ ହୋଇ ସେ ଘର ବାରଣ୍ଡା ଛୁଇଁଲାକ୍ଷଣି କାଦୁଅରେ ଗୋଡ ଖସେଇ କଚଡିହୋଇ ପଡିଲା । ମୁଣ୍ଡଟା ଘୁରିଗଲା ନିମିଷକରେ, ସବୁଆଡ 'ତାକୁ ଅନ୍ଧାର ଦିଶିଲା ।

ମୁକୁନ୍ଦର ପାଟିଶୁଣି ଘରୁ ବାପା, ବୋଉ, ଆଉ ତାର ସ୍ତ୍ରୀ ଝରା ଝାପ୍‌ସା ଅନ୍ଧାରରେ ଜାଣିହୋଇ ନଥିଲା । ଅନ୍ୟ ତି' ତିନିଜଣ ଧାଇଁଆସି ତାକୁ ଟେକିନେଇ ଦଉଡ଼ିଆ ଖଟଉପରେ ପକାଇଦେଲେ ! କିଏ ଲୋଟାଏ ପାଣିଆଣି ମୁଣ୍ଡରେ ଢାଳି-ଦେବାକ୍ଷଣି ମୁକୁନ୍ଦର ସଂପୂର୍ଣ୍ଣ ଚେତା ଆସିଲା । ଝଡରଳି ପବନ-ବୋହି ବର୍ଷା ହେଉଛି, ଝାପ୍‌ସା ଲଣ୍ଠନ ଆଲୁଅରେ ଦୁଆରେ ଜମିଥିବା ବର୍ଷାପାଣିକୁ ଚାହିଁ ମୁକୁନ୍ଦ ପିଲାଙ୍କଭଳି କହିଲା— "ବାପା ଆଜି ଆଉ ସେଦିନପରି ବର୍ଷାହେବନିତ ? ଜେଜେଙ୍କ-କଥା ତୁମର ମନେ ଅଛିତ" ? ବାପା ନାସ ଟିକିଏ ନାକ [illegible] ଗୁଞ୍ଜି କହିଲା—"ତୁ ହାଟକୁ ଗଲାପରେ ପରେ ତ ବର୍ଷାଟା ଘୋ[illegible] ଆସି ଗାଳିଗୁଲିଛି । ବାରିପଟ କୁହାଳର କାଛ ପଡିଗଲାଣି, ବ[illegible] ଦି'ଟାକୁ ଆଣି ଢେଙ୍କି ଶାଳରେ ଛନ୍ଦିଦେଇଛି । ନୀଳାଟା ସେ[illegible] ବର୍ଷାରେ ପହଞ୍ଚିଲା ଗୋଟାଛାଏଁ ଓଦାହୋଇ.............."

ଓହୋ ! ନୀଳା ଆସି ଯାଇଛି, ବାଟରେ ସେକଥା ଭାବ[illegible] ମୁଣ୍ଡରେ ଚିନ୍ତାପଶିଯାଇ ଥିଲା । ହଇରେ ନୀଳା, ନୀଳା ଏତିକି [illegible] ଆଇଲୁ" ?

ନୀଳା ବଦଳରେ ବାପା ଉତ୍ତରଦେଲା—

ସେ ଆସିବ । ତୁ ଟିକେ ଥୟ ଧର । ସଙ୍ଗରେ ତାର ମାମୁଁ ଆଉ, ଆଉମାନେ ବୁଝିଲୁବାପ, କଥାଟା କେମିତି କ'ଣ ଅବାଗିଆ ଲାଗୁଛି ମତେ । ବଡ ଅଶୁଭଦିନ ସବୁ ଆସୁଛି । ତୋ ବୋଉ ରସୁଣତେଲ ଗରମକରିବାକୁ ଯାଇଛି । ଆସୁ କହିବ.............................. ।

ପୁଣି ଗୋଟାଏ ବିଜୁଳି ଘଡଘଡି ମାରି ମେଘ ଗର୍ଜିହୋଇ ପଡ଼ିଲା । ପବନରେ ଦୋହଲି ରୋଷେଇଘର ଚାଳିଟା ଉଡିଯିବକି ଆଉ ? ସବୁଆଡେ ଯେମିତି ଗୋଟାଏ ଛପିଲା, କୁହୁଳିଲା ଭାବ ଭରିରହିଛି । କିଛି ବୁଝାଡ ନଜାଣି ହଠାତ୍ ଅଗ୍ନନକ ଦୁଃଖରେ ଛାତିଟା କୋରି ହୋଇ ଯାଉଛି । ପୁଅଟାର କଣ ହୋଇଛିକି? ଆଉ, ଦେହପା' ଭଲନାହିଁକି ? ସବୁଦିନ ନଡନଡିଆ ଦେହଟାର । ଖାଇବ ମାଛପରି, ପାଠପଢ଼ି ହେବଟାକୁ ମୋଟରୁ ଦେଖିଲାନି ଟୋକାଟା ! ବାପା ଏମିତି ଶୁଭ ଅଶୁଭ କଥା ପକେଇ ବର୍ଷା-ରାତିରେ ବେଶୀ ଯେମିତି ମନଟାକୁ ଦବେଇ ଦଉଛି ।

ଏତିକିବେଳେ ବୋଉଆସି ମୁକୁନ୍ଦର ଗୋଡଟାକୁ ଟାଣି ନେଇ ତେଲମାଲିସ କରିବା ଆରମ୍ଭ କରିଦେଲା । ଅନ୍ଧାରରେ ବୋଉର ମୁହଁ ବି ଦିଶୁନି । ମୁକୁନ୍ଦ ଅପେକ୍ଷା କଲା, ବୋଉମନକୁ କିଛି କହିବ । ହେଲେ କେତେ ଆଉ ସେ ଅପେକ୍ଷା-କରିବ ? ପଚାରିଦେଲା—

"ବୋଉ ! ନୀଳା ପରା ଘରକୁ ଆସଛି । କାହିଁ ଦେଖୁନିତ? ଶୋଇପଡିଲାଣି କି " ?

ବୋଉ କାନ୍ଦିପକେଇ କହିଲା—

"ତତେ କ'ଣ କହିବିରେ ପୁଅ ! ମୋ କରମ ସେଇଆ ! କୁହାନାହିଁ, ବୋଧନାହିଁ ସଙ୍ଗରେ ଝିଅଟିଏ ନେଇ ଚାଲି ଆସିଛି.................. ପୁଣି କହୁଛି ତାକୁ ସେ କଚେରୀରେ ଲେଖା ପଢାକରି ବାହାହୋଇ ଆଇଚି" ।

"କଣ କହୁଛ ତୁ ବୋଉ ? ବାହାହୋଇ ପଡିଛି ଆମକୁ କାହାକୁ ନ କହିକରି ! ସଙ୍ଗରେ ବୋହୂ ନେଇ ଘରକୁ ଆସିଛି........ ତୁ ବୋଉ ସତରେ ବୁଝିଛୁ ତ " ?

ବାପା ଫୁସ ଫୁସ କରି କହିଲା—

"ତୁ ସେମିତି ଅଧୈର୍ଯ୍ୟ ହେଲେ କାମହେବନି ମନୁ । ଅସଲ ଘରଭଙ୍ଗା ତା ମାମୁଁ ତ ସାଙ୍ଗରେ ନେଇକରି ଆଇଚି । ସହର ବଜାରରେ ପାଠପଢିବାକୁ ଛାଡିଲେତ ଏଇଦଶା" । ମୁକୁନ୍ଦ କିଛି ନଶୁଣିଲାପରି ଆସ୍ତେ ପଚାରିଲା—

"ଗାଁ ଲୋକେ ଆସିଲାବେଳେ କେହି ଦେଖିନାହାନ୍ତିତ ? କିଏ କିଛି ପଚାରି ନାହାନ୍ତି ତ ? କାଲିସକାଳୁ କିପରି ମୁହଁ ଦେଖେଇବା" ? "ଆଉ ମୁହଁ ଦେଖେଇବା କଥା କହନା । ଭଲ ନିଜ ଜାତିରେ ବାହାହୋଇଥାନ୍ତା, ଏକଦମ ବ୍ରାହ୍ମଣ ଘର ଝିଅଟାକୁ ବିଭା ହୋଇଛି ବୋଲି କହୁଛି । ମାମୁଁ ବି ସେଇ-କଥାରେ ଭଣଜାକୁ ତାରିଫ୍ କରିନେଇ ଆସିଛି" ।

ମୁକୁନ୍ଦ ଚମକି ପଡ଼ିଲା ଆଉଥରେ । ଛାତିଭିତରଟାରେ କିଏ ଯେମିତି କୁରାଢ଼ୀରେ ଚୋଟମାରି କାଟିପକାଉଛି । ବର୍ଷାପାଣିର କଥା ସଙ୍ଗକୁ ଜେଜେ ଆଉଗୋଟାଏ କାହାଣୀବି ତାକୁ କହିଥିଲେ । ନେରୁ ସାଗପଞ୍ଚ ଓ ଜେଜେଙ୍କର ଜମିଦାରୀ ଥିଲା । ତାଙ୍କଘରର କୋଉ ଗୋଟିଏ ବୋହୂ ସଞ୍ଜବୁଡେ ଅଣ୍ଡା-ପାଣି କରୁଥିଲାବେଳେ ମଳିକସାହିର ଟୋକାଟିଏ ଆମ୍ବଗଛରେ ବସି ଆମ୍ବକଷି ତୋଳିବା ବାହାନାରେ ଲୁଚି ଲୁଚି ଚାହିଁଥିଲା । କିଏ ଏକଥାନେଇ ବୁଢାକୁ କହିଦେଲାପେ ବୁଢ଼ା ଚାରିଟା ଲୋକ ଲଗେଇ ରାତିଅଧରେ ଟୋକାଟାକୁ ଛେଚି ଲହୁଲୁହାଣ କରିଦେଲେବି କେହିକୁଆଡେ ପାଟିଫିଟେଇଲେନି । ତାର ଦି' ଦିନପରେ ସେଇ ପାପରବୋଝ ମଳିକସାହି ବୋହି ପାରିଲାନି । ଅଗ୍ନି ଦେବତା ଲହ ଲହ ଜିଭ ମେଲେଇ ସେଇଗାଁକୁ ଘଣ୍ଟାଏ ଭିତରେ ସଫା-କରିଦେଲା । ଆଉ ସେ ଟୋକାଟା ସେଇ ନିଆଁ ଭିତରେ ଜଳି-ପୋଡି ପାଉଁଶ ହୋଇଗଲା ! ବ୍ରାହ୍ମଣ ଅଭିଶାପ ପଡିଲେ ନିସ୍ତାରନାହିଁ ବୋଲି ଜେଜେ କେତେଥର ସଞ୍ଜବୁଡେ କହିଥିବ ! ଏତେଦିନ ଧରି ସେ ଘଟଣାଟା ମନ ଭିତରେ କେଉଁଠି ଲୁଚି ରହିଥିଲା ମୁକୁନ୍ଦର କେଜାଣି ! ଶର ଶର ହୋଇ ସାରା ଦେହଟା ତାର କମ୍ପି ଗଲା ଆଖିଆଗରେ ନାନା ବୀଭତ୍ସ ଦୃଶ୍ୟ ଭାସିଗଲା । ସେମିତି ଦୁର୍ଦ୍ଦଶାର ଭାଗ୍ୟ ତାକୁ ଚାହିଁ ବସିଛି । ସେ ବାଟକାଟି ପଳେଇଗଲେବି କିଏତାକୁ ଛାଡୁଛି ? ଯାହା କପାଳରେ ଲେଖାଅଛି ତାକୁ ଭୋଗିବାକୁ ପଡିବ । ଜେଜେ ଯେତେ ସାବଧାନ କଥା କହିଲେବି କ'ଣ ସେ ସାବଧାନ ରହିପାରିଲା ?

ଏତିକିବେଳେ ବିଡିଟିଏ ଫୁଙ୍କି, ଫୁଙ୍କି ଗଣ୍ଡିକାଣ ମାଝି ମୁକୁନ୍ଦର ଗଳା ଅଗଣି ଆସି ପହଞ୍ଚିଗଲା । ସେତେହେଲେ ବଡଶଳା, ସମ୍ପର୍କରେ ମାନ୍ୟ, ତହିଁରେ କଲିକତାରେ ରହି କଣ୍ଟାପଇସା ରୋଜଗାର କରି ଟିକିଏ ଡେଙ୍ଗାକରି କଥା କି କହେ । ସେମିତି ପ୍ରଶ୍ନକୁ ଉତ୍ତର ଦେଇପାରେନା ମୁକୁନ୍ଦ । ଖଟର ଧଡପଡହୋଇ ଖଟରୁଉଠି ଓଳଗିହୋଇ ପଡିଲା ସେ । ଖଟର ଗୋଟିଏ କଣକୁ ବସି ଯାଇ ଯାଇ, ଅଗଣିକହିଲା—

"ବୁଝିଲ ମୁକୁନ୍ଦ ! ଆଜିକାଲି ଯୁଗ ଆଗପରି ନାହିଁ । ସହରବଜାରରେ ସବୁ ଚଳିଲାଣି । ମଣିଷ ସଙ୍ଗରେ ଆଉ ମଣିଷର ଭେଦଭାବ ନାହିଁ । ତମେ ଯେତେବେଳେ ବାପ, ତମର ମନରେ ଆଶାଥିବ ପୁଅକୁ ବର ବେଶରେ ସଜେଇ ଦେଇ ବାଜା ବଜେଇବ, ରୋଷଣୀ କରି ବୋହୂ ଆଣିବ । ହେଲେ ଏବେ ଆଶା ନପୁରିଲା, ସବୁବେଳେ କ'ଣ ସବୁକଥା ହୁଏ" ? ମୁକୁନ୍ଦକିଛି କହିବାପୂର୍ବରୁ ତା ବାପ କହିଲା............

"ତୁମେ ଯାହା କହୁଛ ଆମେ ବୁଝୁଛୁ ପୁଅ । ହେଲେ ଏ ଗାଁରେ ଆଉ ରହିବା କଥା ନୁହଁ । ବ୍ରାହ୍ମଣସାଇ ବାଲା ଆମକୁ ପିଟି ପିଟି ମାରିଦେବେ । ଆମ ସାଇଲୋକ ବାର ହିନସ୍ତା କରିବେ ଆମେ କୋଉ କୂଳକୁ ହେବୁନି" ।

"କ'ଣ କହୁଛ ମଉସା ? ସାଇବାଲା ତୁମକୁ ପିଟିବେ କାହିଁକି ? ଆଜିକାଲି ପରା ଆଇନ କାନୁନ ସବୁବଦଳିଗଲାଣି । ତା' ଛଡା ନୀଳମଣିତ ଗାଁରେ ସବୁଦିନ ରହିବନି । ଚାକିରୀ କଲାକ୍ଷଣି ତାବୋହୂକୁ ନେଇ ସେ ଚାଲିଯିବ । ଏଣେ ବୋହୂ କିଛି କମ୍‌ନୁହେ ମ ! ସେବି ତୁମ ନାତି ପରି ଚାକିରୀ କରିବ........ !"

ଘଡଘଡି ବିଜୁଳିରେ ଅଗଣିର କଥା ଅଧାରହିଲା ! ରୋଷେଇ ଘର ସ୍ତମ୍ଭରୁ ମେଞ୍ଚାଏ ଉଡିଆସି ପଡିଲା ଖୋଲା ଦୁଆରେ ! ସେଇ ବିଜୁଳି ଆଲୁଅର ପଛପଟରେ ଝାସର, ଖସର ଶବ୍ଦଶୁଣି ମୁକୁନ୍ଦ ଚମକି ପଡିଲା । ଅଧା ଆଲୁଅ ଅଧା ଛାଇରେ ଝିଅଟିଏ ମୁଣ୍ଡରେ ଓଢଣା ଟାଣିଦେଇ ଲଥକରି ତା' ଗୋଡତଳେ ପଡିଗଲା । ପଛକୁପଛ ନୀଳା ମଧ୍ୟ ଗୋଡ ଛୁଇଁଲା । ମୁକୁନ୍ଦ ନିଜେ କ'ଣ କହିବ ବୁଝିପାରିଲାନି । ବୋହୂଟି ଦେବୀ ପ୍ରତୀମାଟିଏ ପରି ଦିଶୁଚି । ହଠାତ୍ ଗୋଟିଏ ଅଜଣା ଭୟ ମୁକୁନ୍ଦ ଦେହରେ ପଶି ତାକୁ ଦୋହଲେଇ ଦେଲା । ବ୍ରାହ୍ମଣ ଘରର ଝିଅକୁ ସେ ବୋହୂକରି ରଖି ଚଳିବ କେମିତି ? ତାଙ୍କଠାରୁ ନୀଚଜାତି ହୋଇଥିଲେ ବି ଚଳିଥାନ୍ତା, ମାତ୍ର ତା ଜାତି ପଛକୁ ଆଉ ଜାତି ଯେ ସାରା ବିଶ୍ୱରେ ନାହାନ୍ତି ଏକ'ଥା କ'ଣ ସେ ଜାଣିନି ? "ମୁକୁନ୍ଦର ବାପା ବାଡିଟା ଧରି ଉଠୁ ଉଠୁ କହିଲା—"ରାତି ଦିପହର ହବଣି ମନୁବୋଉ ! ପିଲାଏତ ଖାଇ ସାରିଲେଣି, ବର୍ଷା-ପବନ ମାଡି ଆସୁଚି ପ୍ରଳୟବାଜି । ରାତିପାହିଲେ ଯାହାହେବ । ଲଣ୍ଠନଟା ଧରି ବୁହାଳକୁ ଟିକେ ଆସ । ଗୋରୁ ବଳଦ ଡିରିଲେଣିକି କ'ଣ ନହେଲେ ଢେଙ୍କିଶାଳରେ ବାନ୍ଧିଦେବା ! ତେଣିକି ଠାକୁରେ ଭରସା"

ନୀଳା ପକେଟରୁ ଟର୍ଚ୍ଚ କାଢି ଆଣିଲା——

"ବାପାଙ୍କ ଦେହ ଭଲନାହିଁ, ସେ ଶୁଅନ୍ତୁ । ମୁଁ ଗଲେ ତୁମ ସଙ୍ଗରେ ଯିବି ! ମୋ ପାଖରେ ଟର୍ଚ୍ଚ ଅଛି" ।

ମୁକୁନ୍ଦ କିଛି ନ କହି ଚୁପ ରହିଲା । ଝରି ବୋହୂଟାର ହାତ ଧରି ଟାଣି ନେଇ ନେଇ କହିଲା,—"ତୋର ତ ଅକଲ ନାହିଁ ଝିଅ । ମତେ କହୁଛୁ କ'ଣ ? ଘରୁ ଚାଲି ଆଇଲୁ ଟୋକାଟା ସଙ୍ଗରେ । ଭଲ ମନ୍ଦ ବୁଝିଲୁ ନାହିଁ ! ଅସଲ ହେଲା ଜାତି, ସେଇଟା ଗଲେ ଧରମ ଗଲା .......... !

ବୋହୂ ଖପ କରି ଉତ୍ତର ଦେଲା——ମୁଁ କ'ଣ ସେ କଥା ଜାଣି ନି ? ବୁଝିଶୁଝି ତ ବାହା ହୋଇଛି । ଆଜିକାଲି ବ୍ରାହ୍ମଣ, ପାଣ କ'ଣ ? ସମସ୍ତେ ସମାନ । ମୁଁ ଏଇଠି ରହିବି । ଦେଖିବି, ଗାଁବାଲା ମୋର କ'ଣ କରିବେ ?

କାନ୍ଧଟା ଦରଜ ହୋଇ ଗଲଣି । କଖାରୁ ପାଛିଆଟା ତଳେ ଥୋଇ ଗାମୁଛାଟା ଖୋଲି ସେ ମୁହଁରୁ ଝାଳ ପୋଛିଲା । ଆଜିକାଲି ତାକୁ ସବୁବେଳେ ଦୁର୍ବଳ ଲାଗୁଛି । ଗୋଡ ଭଣ୍ଡାଟାରେ ଆବୁପରି ଫୁଲଟାଏ ଓହଳି ପଡ଼ିଲଣି । ବେଶୀ ଚାଲିଲେ ଦରଜ ହେଉଛି । କବିରାଜ କହୁଥିଲେ ଚିକିତ୍ସା ନକଲେ ଗୋଦର ହୋଇଯିବ । ହେଲେ ଦେବ । ଆଉମୁକୁନ୍ଦ କ'ଣ କରିବ ? । ଯାହାତା'ର କପାଳରେ ଲିଖନ, ଅଦୃଷ୍ଟରେ ଅଛି ସେ ଭୋଗ-କରିବ । ନୀଚ ଜାତିରେ ଜନ୍ମହେଲେ କେତେ କଷ୍ଟ ଭୋଗ କରିବ ବୋଲି ଜେଜେ ବାରମ୍ବାର କହୁଥିଲେ । କିନ୍ତୁ ଜେଜେ ଅମଳ କଥା ଭିନ୍ନ ଥିଲା । ଏବକୁତ କେତେ ସୁବିଧା ସରକାର କରିଦେଲେଣି । ପାଠ ପଢ଼ିବାକୁ, ଜମିକିଣି ଘର କରିବାକୁ, ଛୁଆ ବେଉଷଣକୁ ଋଣ ବ୍ୟବସ୍ଥା ହେଲଣି ।ପିଲଦିନେ ବ୍ରାହ୍ମଣ କି କରଣ ଘର ସାଇରଲୋକେ ତାଙ୍କ ସାଇକୁ ମୋଟେ ଆସୁ-ନଥିଲେ । ଭଲମନ୍ଦରେ ପଶୁନଥିଲେ । ଖାଲି କାଙ୍ଗାଳି ଭୋଜନ କି ନମିଉ ପର୍ବରେ ବାରି ପଛପଟେ ପତରପକେଇ ଖାଇବାକୁ ଦେଉ ଥିଲେ । ଆଜି ସେକଥା ନାହିଁ, ଏବାଠି ନଖାଇଲେବି ଟିକେ ଛାଡି ବସା ଉଠା ଖିଆପିଆରେ କିଛି ବାଧା ନାହିଁ । ଗଲବର୍ଷ ଭୋଟ ହେଲବେଳେ ସରପଞ୍ଚ ବ୍ରାହ୍ମଣ ହେଲେବି ମୁକୁନ୍ଦଘରେ ବସି ଘଣ୍ଟାଏ କାଳ ସେମାନଙ୍କୁ ବୁଝେଇଥିଲ କାହାକୁ ଭୋଟଦେଲେ କ'ଣ ହେବ ।

ହେଲେ ବର୍ଷା ବତାସିକି କୋଉ ସରପଞ୍ଚ କି କୋଉ ସରକାର ରୋକିପାରୁ ନାହାନ୍ତି । ଯେମିତି ଯେତେପାଠଶାଠ ପଢି ଯୋଗ୍ୟହୋଇ ପୁଅ ଛିଡାହେବାକୁ ଯାଉଥିଲେବି ଉଚ ଜାତିର ବାଲୁଙ୍ଗା ଛତରା ପିଲଙ୍କ ବାପମାନଙ୍କ ମୁହଁକୁ ଅନେଇ ମୁକୁନ୍ଦ କଥାକହି ପାରୁନି କି ତାଙ୍କ ଘର ବାରଣ୍ଡାରେ ବସିପାରୁନି । କାହିଁକି ? ଆକାଶରେ ବର୍ଷା ଯେମତି ଆତଙ୍କ, ଠାକୁର ପିଣ୍ଡା, ଉଚଜାତି ସେମତି ତା ମନରେ ଆତଙ୍କ ସୃଷ୍ଟିକରି ରହିଛି । ହେଲେ ସେ ଦବିଯାଉ ନାହିଁ । ପୁଅ ବଡ଼ଚାକିରୀ କରି ସହରରେ ରହିଲେ ସବୁକଥା ଆପଣାଛାଏଁ ବଦଳି ଯିବ ।

ଏ କ'ଣ ? ବର୍ଷା ପଡିଲଣି ଯେ ! ତରତର ହୋଇ ସେ ଧାଇଁବାକୁ ଲାଗିଲ ଟୋକେଇଟା ମୁଣ୍ଡରେ ଥୋଇ । ସଙ୍ଗେ ସଙ୍ଗେ ଗଜ ଗଜ ହୋଇ ବର୍ଷା ପଡିବାକୁ ଲାଗିଲା । ମୁକୁନ୍ଦର ମନେ-ହେଲ ସତେଯେମିତି ଐରାବତହସ୍ତୀ ପାଟି ମେଲକରି ଇନ୍ଦ୍ରର ଭଣ୍ଡାର ଲୁଟିଆଣି ଢାଳି ଦେଇ ଯାଉଛି । ବିଜୁଳି ଘଡଘଡି ଭିତରେ ଅଣନିଃଶ୍ୱାସୀ ହୋଇ ସେ ଘର ବାରଣ୍ଡା ଛୁଇଁଲାକ୍ଷଣି କାଦୁଅରେ ଗୋଡ ଖସେଇ କଚୁଡିହୋଇ ପଡିଲ । ମୁଣ୍ଡଟା ଘୂରିଗଲ ନିମିଷକରେ, ସବୁଆଡ ତାକୁ ଅନ୍ଧାର ଦିଶିଲ ।

ମୁକୁନ୍ଦର ପାଟିଶୁଣି ଘରୁ ବାପା, ବୋଉ, ଆଉ ତାର ସ୍ତ୍ରୀ ଝରା ଝାପ୍‌ସା ଅନ୍ଧାରରେ ଜାଣିହୋଇ ନଥିଲ । ଅନ୍ୟ ଦି' ତିନିଜଣ ଧାଇଁଆସି ତାକୁ ଟେକିନେଇ ଦଉଡ଼ିଆ ଖଟଉପରେ ପକାଇଦେଲେ ! କିଏ ଲୋଟାଏ ପାଣିଆଣି ମୁଣ୍ଡରେ ଢାଳି-ଦେବାକ୍ଷଣି ମୁକୁନ୍ଦର ସଂପୂର୍ଣ୍ଣ ଚେତା ଆସିଲ । ଝଡଉଳି ପବନ-ବୋହି ବର୍ଷା ହେଉଛି, ଝାପ୍‌ସା ଲଣ୍ଠନ ଆଲୁଅରେ ଦୁଆରେ ଜମିଥିବା ବର୍ଷାପାଣିକୁ ଚାହିଁ ମୁକୁନ୍ଦ ପିଲଙ୍କଉଳି କହିଲ— "ବାପା ଆଜି ଆଉ ସେଦିନପରି ବର୍ଷାହେବନିତ ? କେଜେଙ୍କ-କଥା ତୁମର ମନେ ଅଛିତ" ? ବାପା ନାସ ଟିକିଏ ନାକରେ ଗୁଞ୍ଜି କହିଲ—"ତୁ ହାଟକୁ ଗଲପରେ ପରେ ତ ବର୍ଷାଟା ଘୋଟି-ଆସି ଗାଜିଗଲିଛି । ବାରିପଟ ଟୁହାକର କାନ୍ଥ ପଡିଗଲଣି, କଳ୍ପ ଦି'ଟାକୁ ଆଣି ଢେଙ୍କି ଶାଳରେ ଛନ୍ଦିଦେଇଛି । ନୀନାଙ୍କା ସେଥି ବର୍ଷାରେ ପହଁଲ ଗୋଟାଛାଏଁ ଓଦାହୋଇ.............." ।

ଓହୋ ! ନୀନା ଆସି ଯାଇଛି, ବାଟରେ ସେକଥା ଖାଲି ମୁଣ୍ଡରେ ଚିନ୍ତାପଶିଯାଇ ଥିଲ । ହଇରେ ନୀନା, ନୀନା ଏଠିକି ଆଇଲୁ" ?

ନୀନା ବଦଳରେ ବାପା ଉତ୍ତରଦେଲ—

ସେ ଆସିବ । ତୁ ଟିକେ ଥୟ ଧର । ସଙ୍ଗରେ ତାର ମାମୁଁ ଆଉ, ଆଉମାନେ ବୁଝିଲୁବାପ, କଥାଟା କେମିତି କାଁଣ ଅବାଗିଆ ଲାଗୁଛି ମତେ । ବଡ ଅଶୁଭଦିନ ସବୁ ଆସୁଛି । ତୋ ବୋଉ ରସୁଣତେଲ ଗରମକରିବାକୁ ଯାଇଛି । ଆସୁ କହିବ.............................. ।

ପୁଣି ଗୋଟାଏ ବିଜୁଳି ଘଡଘଡି ମାରି ମେଘ ଗର୍ଜିହୋଇ ପଡିଲ । ପବନରେ ଦୋହଲି ରୋଷେଇଘର ଚାଳିଟା ଉଡିଯିବକି ଆଉ ? ସବୁଆଡେ ଯେମିତି ଗୋଟାଏ ଛପିଲ, ତୁହୁନିଲ ଭାବ ଭରିରହିଛି । କିଛି ବୁଝାତ ନଜାଣି ହଠାତ୍ ଅଜ୍ଞନକ ଦୁଃଖରେ ଛାତିଟା କୋରି ହୋଇ ଯାଉଛି । ପୁଅଟାର କଣ ହୋଇଛିକି? ଆଉ, ଦେହସା' ଭଲନାହିଁକି ? ସବୁଦିନ ନଡନଡିଆ ଦେହଟାର । ଖାଇବ ମାଛପରି, ପାଠପଢି ହେବଟାକୁ ମୋଟରୁ ଦେଖିଲାନି ଟୋକାଟା ! ବାପା ଏମିତି ଶୁଭ ଅଶୁଭ କଥା ପକେଇ ବର୍ଷା-ରାତିରେ ବେଶୀ ଯେମିତି ମନଟାକୁ ଦବେଇ ଦଉଛି ।

ଏତିକିବେଳେ ବୋଉଆସି ମୁକୁନ୍ଦର ଗୋଡଟାକୁ ଟାଣି ନେଇ ତେଲମାଲିସ କରିବା ଆରମ୍ଭ କରିଦେଲ । ଅନ୍ଧାରରେ ବୋଉର ମୁହଁ ବି ଦିଶୁନି । ମୁକୁନ୍ଦ ଅପେକ୍ଷା କଲ, ବୋଉମନକୁ କିଛି କହିବ । ହେଲେ କେତେ ଆଉ ସେ ଅପେକ୍ଷା-କରିବ ? ପଚାରିଦେଲ—

"ବୋଉ ! ନୀନା ପରା ଘରକୁ ଆସଛି । କାହିଁ ଦେଖୁନିତ? ଶୋଇପଡିଲଣି କି " ?

ବୋଉ କାନ୍ଦିପକେଇ କହିଲ—

"ତତେ କ'ଣ କହିବିରେ ପୁଅ ! ମୋ କରମ ସେଇଆ ! ତୁହାନାହିଁ, ବୋଲନାହିଁ ସଙ୍ଗରେ ଝିଅଟିଏ ନେଇ ଚାଲି ଆସିଛି................ ଶୁଣି କହୁଛି ତାକୁ ସେ କଚେରୀରେ ଲେଖା ପଢାକରି ବାହାହେଇ ଆଇଚି" ।

"କଣ କହୁଛ ତୁ ବୋଉ ? ବାହାହୋଇ ପଡିଛି ଆମକୁ କାହାକୁ ନ ଜଣେଇ ! ସଙ୍ଗରେ ବୋହୂ ନେଇ ଘରକୁ ଆସିଛି....... ତୁ ବୋଉ ସତରେ ବୁଝିଛୁ ତ " ?

ବାପା ଫୁସ ଫୁସ କରି କହିଲା—

"ତୁ ଯେମିତି ଅଧୈର୍ଯ୍ୟ ହେଲେ କାମହେବନି ମଦ୍ଦ । ଅସଲ ଘିଅଭଙ୍ଗା ତା ମାମୁଁ ତ ସାଙ୍ଗରେ ନେଇକରି ଆଇଚି । ସହର ବଜାରରେ ପାଠପଢ଼ିବାକୁ ଛାଡ଼ିଲେତ ଏଇଦଶା" । ମୁକୁନ୍ଦ କିଛି ନଶୁଣିଲା ପରି ଆସ୍ତେ ପଚାରିଲା—

"ଗାଁ ଲୋକେ ଆସିଲାବେଳେ କେହି ଦେଖିନାହାନ୍ତିତ ? କିଏ କିଛି ପଚାରି ନାହାନ୍ତି ତ ? କାଲିସକାଳୁ କିପରି ମୁହଁ ଦେଖେଇବା" ? "ଆଉ ମୁହଁ ଦେଖେଇବା କଥା କହନା । ଉଇ ନିଜ ଜାତିରେ ବାହାହୋଇଥାନ୍ତା, ଏକଦମ ବ୍ରାହ୍ମଣ ଘର ଝିଅଟାକୁ ବିଭା ହୋଇଛି ବୋଲି କହୁଛି । ମାମୁଁ ବି ସେଇ-କଥାରେ ଭଣଜାକୁ ତାରିଫ୍ କରିନେଇ ଆସିଛି" ।

ମୁକୁନ୍ଦ ଚମକି ପଡ଼ିଲା ଆଉଥରେ । ଛାତିଭିତରଟାରେ କିଏ ଯେମିତି କୁରାଢ଼ୀରେ ଚୋଟମାରି କାଟିପକାଉଛି । ବର୍ଷାପାଣିର କଥା ସଙ୍ଗକୁ ଜେଜେ ଆଉଗୋଟାଏ କାହାଣୀବି ତାକୁ କହିଥିଲେ । ନେତ୍ର ସାମନ୍ତ ଓ ଜେଜେଙ୍କ ଜମିଦାରୀ ଥିଲା । ତାଙ୍କଘରର କୋଉ ଗୋଟିଏ ବୋହୂ ସଞ୍ଜବୁଡେ ଅଣ୍ଟା-ପାଣି କରୁଥିଲାବେଳେ ମଳିଆସାହିର ଟୋକାଟିଏ ଆମ୍ବଗଛରେ ବସି ଆମ୍ବକଷି ତୋଳିବା ବାହାନାରେ ଲୁଚି ଲୁଚି ଚାହିଁଥିଲା । କିଏ ଏକଥାନେଇ ବୁଢ଼ାକୁ କହିଦେଲାପେ ବୁଢ଼ା ଚାରିଟା ଲୋକ ଲଗେଇ ରାତିଅଧରେ ଟୋକାଟାକୁ ଛେଚି ଲହୁଲୁହାଣ କରିଦେଲେବି କେହି କୁଆଡେ ପାଟିଫିଟେଇଲେନି । ତାର ଦି' ଦିନପରେ ସେଇ ପାପରବୋଝ ମଳିଆସାହି ବୋହି ପାରିଲାନି । ଅଗ୍ନିଦେବତା ଲହ ଲହ ଜିଭ ମେଲେଇ ବସ୍ତିଟାକୁ ଘଣ୍ଟାଏ ଭିତରେ ସଫା-କରିଦେଲେ । ଆଉ ସେ ଟୋକାଟା ସେଇ ନିଆଁଭିତରେ ଜଳି-ପୋଡ଼ି ପାଉଁଶ ହୋଇଗଲା ! ବ୍ରାହ୍ମଣ ଅଭିଶାପ ପଡ଼ିଲେ ନିସ୍ତାରନାହିଁ ବୋଲି ଜେଜେ କେତେଥର ସଞ୍ଜବୁଡେ କହିଥିବ ! ଏତେଦିନ ଧରି ସେ ଘଟଣାଟା ମନ ଭିତରେ କେଉଁଠି ଲୁଚି ରହିଥିଲା ମୁକୁନ୍ଦ ଯେ କେଜାଣି ! ଶର ଶର ହୋଇ ସାରା ଦେହଟା ତାର କମ୍ପି ଗଲା ଆଖିଆଗରେ ନାନା ବୀଭତ୍ସ ଦୃଶ୍ୟ ଭାସିଗଲା । ସେ ବାଟକାଟି ଯେମିତି ଦୁର୍ଦ୍ଦଶାର ଭାଗ୍ୟ ତାକୁ ଘେରି ବସିଛି । ସ୍ୱର୍ଗ ଗଲେବି କିଏତାକୁ ଛାଡ଼ୁଛି ? ଯାହା କପାଳରେ ଲେଖାଅଛି ତାକୁ ଭୋଗିବାକୁ ପଡ଼ିବ । ଜେଜେ ଯେତେ ସାବଧାନ କଥା କହିଲେବି କ'ଣ ସେ ସାବଧାନ ରହିପାରିଲା ?

ଏତିକିବେଳେ ବିଡ଼ିଟିଏ ଫୁଙ୍କି, ଫୁଙ୍କି ଖଣ୍ଡିକାଶ ମାରି ମୁକୁନ୍ଦର ଶଳା ଅଗଣି ଆସି ପହଞ୍ଚିଗଲା । ଯେତେହେଲେ ବଡଶଳା, ସମ୍ପର୍କରେ ମାନ୍ୟ, ତହିଁରେ କଲିକତାରେ ରହି କଣ୍ଟାପଇସା ରୋଜଗାର କରି ଟିକିଏ ଡେଙ୍ଗାକରି କଥା ବି କହେ । ସେମିତି ପ୍ରଶ୍ନକୁ ଉତ୍ତର ଦେଇପାରେନା ମୁକୁନ୍ଦ । ଖଟର ଧଡପଡହୋଇ ଖଟରୁଉଠି ଓଳଗିହୋଇ ପଡ଼ିଲା ସେ । ଖଟର ଗୋଟିଏ କଣକୁ ବସି ଯାଉ ଯାଉ, ଅଗଣିକହିଲା—

"ବୁଝିଲ ମୁକୁନ୍ଦ ! ଆଜିକାଲି ଯୁଗ ଆଗପରି ନାହିଁ । ସହରବଜାରରେ ସବୁ ଚଳିଲଣି । ମଣିଷ ସଙ୍ଗରେ ଆଉ ମଣିଷର ଭେଦଭାବ ନାହିଁ । ତମେ ଯେତେବେଳେ ବାପ, ତମର ମନରେ ଆଶାଥିବ ପୁଅକୁ ବର ବେଶରେ ସଜେଇ ଦେଇ ବାଜା ବଜେଇବ, ରୋଷଣୀ କରି ବୋହୂ ଆଣିବ । ହେଲେ ଏବେ ଆଶା ନପୂରିଲା, ସବୁବେଳେ କ'ଣ ସବୁକଥା ହୁଏ" ? ମୁକୁନ୍ଦକିଛି କହିବାପୂର୍ବରୁ ତା ବାପ କହିଲା............

"ତୁମେ ଯାହା କହୁଛ ଆମେ ବୁଝୁଛୁ ପୁଅ । ହେଲେ ଏ ଗାଁରେ ଆଉ ରହିବା କଥା ନୁହଁ । ବ୍ରାହ୍ମଣସାହି ବାଲା ଆମକୁ ପିଟି ପିଟି ମାରିଦେବେ । ଆମ ସାଇଲୋକ ବାର ହିନସ୍ତା କରିବେ ଆମେ କୋଉ କୂଳକୁ ହେବୁନି" ।

"କ'ଣ କହୁଛ ମଉସା ? ସାଇବାଲା ତୁମକୁ ପିଟିବେ କାହିଁକି ? ଆଜିକାଲି ପରା ଆଇନ କାନୁନ ସବୁବଦଳିଗଲାଣି । ତା' ଛଡା ନୀଳମଣିତ ଗାଁରେ ସବୁଦିନ ରହିବନି । ଚାକିରୀ କଲାକ୍ଷଣି ତା ବୋହୂକୁ ନେଇ ସେ ଚାଲିଯିବ । ଏଣେ ବୋହୂ କିଛି କମ୍ନୁହେଁ ମ ! ସେବି ତୁମ ନାତି ପରି ଚାକିରୀ କରିବ........ !"

ଘଡଘଡି ବିଜୁଳିରେ ଅଗଣିର କଥା ଅଧାରହିଲା ! ରୋଷେଇ ଘର ଭିତରୁ ମେଞ୍ଚାଏ ଉଡିଆସି ପଡିଲା ଖୋଲା ଦୁଆରେ । ସେଇ ବିଜୁଳି ଆଲୁଅର ପଛପଟରେ ଖସର, ଖସର ଶବ୍ଦଶୁଣି ମୁକୁନ୍ଦ ଚମକି ପଡିଲା । ଅଧା ଆଲୁଅ ଅଧା ଛାଇରେ ଝିଅଟିଏ ମୁଣ୍ଡରେ ଓଢଣା ଟାଣିଦେଇ ଲଥକରି ତା' ଗୋଡତଳେ ପଡିଗଲା । ପଛରୁପଛ ନୀନା ମଧ୍ୟ ଗୋଡ ଛୁଇଁଲା । ମୁକୁନ୍ଦ ନିଜେ କ'ଣ କହିବ ବୁଝିପାରିଲାନି । ବୋହୂଟି ଦେବୀ ପ୍ରତୀମାଟିଏ ପରି ଦିଶୁଚି । ହଠାତ୍ ଗୋଟିଏ ଅଜଣା ଭୟ ମୁକୁନ୍ଦ ଦେହରେ ପଶି ତାକୁ ଦୋହଲେଇ ଦେଲା । ବ୍ରାହ୍ମଣ ଘରର ଝିଅକୁ ସେ ବୋହୂକରି ରଖି ଚଳିବ କେମିତି ? ତାଙ୍କଠାରୁ ନୀଚଜାତି ହୋଇଥିଲେ ବି ଚଳିଥାନ୍ତା, ମାତ୍ର ତା ଜାତି ପଛକୁ ଆଉ ଜାତି ଯେ ସାରା ବିଶ୍ୱରେ ନାହାନ୍ତି ଏକ'ଥା କ'ଣ ସେ ଜାଣିନି ? "ମୁକୁନ୍ଦର ବାପା ବାଡ଼ିଟା ଧରି ଉଠୁ ଉଠୁ କହିଲା—"ରାତି ଦିପହର ହବଣି ମଦ୍ଦବୋଉ ! ପିଲାଏତ ଖାଇ ସାରିଲେଣି, ବର୍ଷା-ପବନ ମାଡି ଆସୁଚି ପ୍ରଳୟସାଜି । ରାତିପାହିଲେ ଯାହାହେବ । ଲଣ୍ଠନଟା ଧରି ବୁହାଙ୍କୁ ଟିକେ ଆସ । ଗୋରୁ ବଳଦ ଡିଡିଲେଣିକି କ'ଣ ନଇଲେ ଢେଙ୍କିଶାଳରେ ବାନ୍ଧିଦେବା ! ତେଣିକି ଠାକୁରେ ଭରସା"

ନୀନା ପକେଟରୁ ଟର୍ଚ୍ଚ କାଢି ଆଣିଲା——

"ବାପାଙ୍କ ଦେହ ଭଲନାହିଁ, ସେ ଶୁଅନ୍ତୁ । ମୁଁ ଗଲ ତୁମ ସାଙ୍ଗରେ ଯିବି ! ମୋ ପାଖରେ ଟର୍ଚ୍ଚ ଅଛି" ।

ମୁକୁନ୍ଦ କିଛି ନ କହି ଚୁପ ରହିଲା । ଝରି ବୋହୂଟାର ହାତ ଧରି ଟାଣି ନେଇ ନେଇ କହିଲା,—"ତୋର ତ ଅକଲ ନାହିଁ ଝିଅ । ମତେ କହୁନୁ କ'ଣ ? ଘରୁ ଚାଲି ଆଇଲୁ ଟୋକାଟା ସଙ୍ଗରେ । ଭଲ ମନ୍ଦ ବୁଝିଲୁ ନାହିଁ ! ଅସଲ ହେଲା ଜାତି, ସେଇଟା ଗଲେ ଧରମ ଗଲା .......... ।

ବୋହୂ ଖପ କରି ଉତ୍ତର ଦେଲା—ମୁଁ କ'ଣ ସେ କଥା ଜାଣିନି ? ବୁଝିଶୁଝି ତ ବାହା ହୋଇଛି । ଆଜିକାଲି ବ୍ରାହ୍ମଣ, ପାଣ କ'ଣ ? ସମସ୍ତେ ସମାନ । ମୁଁ ଏଇଠି ରହିବି । ଦେଖିବି, ଗାଁବାଲା ମୋର କ'ଣ କରିବେ ?

କେହି କିଛି କହିଲେ ମୁଁ ବୁଝେଇ ଦେବି । ତମେମାନେ ଡରିବାର କିଛିନାହିଁ ।"

ଝରି କହିଲା –– "ନାହିଁ ନାହିଁ ତୁ କାହାକୁ କିଛି କହିବୁ ନାହିଁ । ତୁ ଜାଣିନୁ, ସେମାନେ ବାଗ ହିନସ୍ତା କରିବେ । ତମେ ଦିହେଁ ହେଲେ ସେହି ସହରରେ ରହି ଯାଉଥାଆନ୍ତ । ମୁଁ ବିକି ଭାଙ୍ଗି ହୋଇ ଟଙ୍କା ପଠାଇ ଥାଆନ୍ତି । ଭାଇ ! ତମେ ତ ସବୁ ଜାଣିଛ ଗାଁ ସାଇ ଲୋକ ଆମକୁ କେମିତି ହଇରାଣ କରିଦେ । ଛୁଆଟା ପଢିବାକୁ ଗଲଦିନୁ ବିନା କାରଣରେ ଆମ ଉପରେ ବାଉ ସାଧୁଛନ୍ତି । ଗୋଟିଏ ବୋଲି ପୁଅ, କେତେ ସାଧିଥିଲ ...... କପାଳତ ବାଦ ସାଧୁଛି, କାହାକୁ କହିବି ?

"କାହିଁକି କପାଳକୁ ଦୋଷ ଦେଉଛ । ଏଥିରେ କାହାର କିଛି କରିବାର ନାହିଁ, ଆମେ ତ ନିଜ ଇଚ୍ଛାରେ ବୁଝିସୁଝି ସବୁ କରିଛୁ । ଏଠି ରହିବାଟା ତୁମେମାନେ ନ ଚାହିଁଲେ କ'ଣ ଆମେ ରହି ପାରିବୁଁ ? ଅବଶ୍ୟ ଗାଁ ଲୋକଙ୍କୁ ବୁଝାଇବା ଦାୟିତ୍ୱ ଆମରି ।"

ଝରି ଟାଣୁଆ କଣ୍ଠରେ କହିଲା –– "କେଉଁଠି ପାଟି କରୁଛୁ ବା ? ସାଇପଡ଼ା କମି ଯାଉଥିବ । ଘରେ ନ ପଶୁଣୁ ଗୁଳ ବାଜୁଛି ।"

ମୋର ଭୁଲ ହୋଇଗଲା ବୋଉ ! ଆଉ ବଡ଼ ପାଟିରେ କଥା କହିବ ନି । ତମେ ଯେମିତ କହିବ ସେମିତି ଚଳିବି । ହେଲେ ମତେ ନେଇ ତମେ ଏତେ ଚିନ୍ତା କରୁଛ କାହିଁକି ? ମୋ ବାପା, ବୋଉ ଘରେ ମାଡ଼ ମାରି କବାଟ ବନ୍ଦ କରି ଅଖିଆ ଅପିଆ ଶାସ୍ତି ଦେଲେ ବି ମୁଁ ଅଟକି ଗଲି ନି । ଆଜି କାଲି ଜାତି ଭେଦ କିଛି ନାହିଁ । ଏତେ ପାଠ ପଢିଲି, କ'ଣ ସବୁମିଛ ?"

ମାମୁଁ କହିଲା––"ବୁଝିଲୁ ଝିଅ, ଏତ ଗାଁ କଥା । ସେଥିକି ଗରିବ ଘର । ଦୁଃଖକରି କାମଧନ୍ଦା କରି ଚଳିବା କେଡ଼େ କଷ୍ଟକର । ତୁ ସବୁ ସହି ପାରିବୁଟି ? ବୋହୂ କିଛି ନକହି ଚୁପ ରହିଲା । ତା ଉପରେ ଆସ୍ତେ ଆସ୍ତେ କହିଲା–

"ଚଳେଇ ନେବିନି କାହିଁକି ? ଏଇ ଛଟା ମାସ ଯାହା ଅସୁବିଧା । ତା'ପରେ ଆମେ ଗୃହିଣୀ କଲେ କ'ଣ ଏମିତି ଆଉ ରହିବ ? ନୀଳମଣି ମୋତେ ସବୁ କହିଛନ୍ତି ।"

ମୁକୁନ୍ଦ ଚମକି ପଡିଲା । ବୋହୂଟା ପୁଅ ନାଁ ଧରି ପକାଉଛି ତୁଣ୍ଡରେ ? ସହର ବଜାରରେ ସବୁ ଚଳେ, ହେଲେ ଏଠିତ ହେବ ନି ? ଏଠିକା ଆଗର ବିଗୁଚ ନ ଶିଖିଲେ ଲୋକ ଲଜ୍ୟାରେ ମୁହଁ ଦେଖେଇ ହବ ନି । ଝରି ମୁକୁନ୍ଦକୁ ହଲେଇ ଦେଇ କହିଲା––"ଉଠୁନା, ଆଉ ବସିଲ କାହିଁକି ଯାହା ଖାଇବ ଶୀଘ୍ର ଖାଇ ନିଅ । ଭାତ ଥଣ୍ଡା ହୋଇ ଗଲାଣି ।"

ବୋହୂ କହିଲା –– "ମୁଁ ଯାଉଛି ଭାତ ଗରମ କରି ବ... ଦେବି । ମାମୁଁ ତମେ ବାପାକୁ ନେଇ ଆସ ।"

ସତେ ମୁକୁନ୍ଦର ସେ ଝିଅ ! ବୋହୂ ନୁହେ ଝିଅପ... ଢଙ୍ଗ ଢଙ୍ଗ କଥା କହୁଛି । ବୋହୂ ଚାଲିଗଲା ପରେ ମୁକୁନ୍ଦ ... ଛିଡ଼ା ହୋଇ କହିଲା –– "ଉଚ୍ଚ ହେଉ, ନୀଚ ହେଉ । ସବୁ... ଆଉ ଫେରି ହେବ ନି । ହେଲେ ସେ ମୋ ଅଗଣା ଛୁଇଁ... ସେଇଟା କ'ଣ ଭଲ ହେବ ?"

ନୀଳମଣି ଭୁହାଳରୁ ଫେରି ସେଠି କେତେବେଳେ ଅଟି... ପହଞ୍ଚିଲା ମୁକୁନ୍ଦ ଜାଣି ପାରିନି । ବାପ କଥା ଶୁଣି ହେ... ହସିଦେଇ କହିଲା ––

"ତମ ମନରୁ ଏ ଯାଏଁ ଡ଼ର ଯାଇନି ବାପା ! ତୁମ ଅଗଣା କାହିଁକି ବୋହୂ ଛୁଇଁବନି ? ବିଜୟା ସେମିତ ଝିଅ ନୁହେଁ । ତୁମ ମନଛଡ଼ା କେହି ତୁମକୁ ଡ଼ରାଉ ନାହାନ୍ତି । ଆଉ, ମୁଁ ତ ଆସିଲା କ୍ଷଣି ସମସ୍ତେ ଆମକୁ ଘେରିଗଲେ । ବ୍ରାହ୍ମଣ ସାହିର ଲୋକେ କିଛିତ କହିନାହାଁନ୍ତି । ଆଉ ଯଦି କିଛି କେହି ତୁମକୁ କହେ, ତୁମେ ଶୁଣିବନି । ଧୀରେ ଧୀରେ ସବୁ ଠିକ୍ ହୋଇଯିବ । ଏଇ ତୁମର ଆଉ ଆମ ସାଇର ମନର ବିକାର ଯୋଗୁଁ ସବୁବେଳେ ଆମେ କଷ୍ଟ ପାଉଛେ । କାହିଁ ମୋ ମନରେ ତ କିଛି ଚିନ୍ତା ନାହିଁ"........

ମୁକୁନ୍ଦ ନୀଳା ହାତଧରି ଉଠୁ, ଉଠୁ ଶୁଣିଲା ବୋହୂର ପାଟି–

"ଶୀଘ୍ର ଆସ, ବାପା ! ଭାତ ଥଣ୍ଡା ହୋଇଯିବ । ଜେଜେ ଆଉ ଜେଜେମାଙ୍କୁ ନେଇଆସ, ଏକାଥରେ ସମସ୍ତେ ବସି ପଡ଼ିବ........ଲଣ୍ଠନରେ ତେଲ କମ୍‌ଥିଛି । ହେଲେ ମେଘ କମି ଗଲାଣି ଆଉ ଘଣ୍ଟାକ ପରେ ଛାଡ଼ି ଆକାଶ ସଫା ହୋଇଯିବ ।"

ମୁକୁନ୍ଦ ପଛେ, ପଛେ ବାପା ବୋଉ ସଭିଏଁ ରୋଷେଇ ଘର ଆଡ଼କୁ ମନ୍ତ୍ର କଲାପରି ଯାଉଥିଲେ ଆଗ ପଛହୋଇ । ଆକାଶରୁ ମେଘ ଯେମିତି ଦୂରକୁ ଦୂରକୁ ପବନ ଓଲେଇ ନେଇ ସଫା କରି ଦେଉଥିଲା ! ମୁକୁନ୍ଦର ଆଖି ପାଉ ନଥିଲା ଆକାଶକୁ ! ! !

ଅର୍ଥନୀତି ବିଭାଗ,
ଶୈଳବାଳା ମହିଳା କଲେଜ,
କଟକ–୨ ।

# କପା ଲୁଗାର ଜନ୍ମ

କୁମାରୀ ଗାୟତ୍ରୀ ଦେବୀ

ରବିବାର । ସ୍କୁଲ ଛୁଟି । ତରବରରେ ଗଣ୍ଡାଏ ଖାଇ ସ୍କୁଲକୁ ଯିବାର ତାଡ଼ନା ନାହିଁ । ସକାଳୁ ନିତ୍ୟକର୍ମ ସାରି ବାପାଙ୍କ ପାଖେ କଥା ଶୁଣିବା ପାଇଁ ବସି ପଡ଼ିଲୁ । ମୋର ସାନ ଭାଇ ଭଉଣୀ ବୁବୁନ୍, ପିଙ୍କି, ଇମା, ଲିମା ଓ ପଡ଼ିଶାଘରୁ ଟୁନା, ମୁନା, ରିଙ୍କୁ, ବର୍ଣ୍ଣି, ଝିଲି, ଲିଲି, ରୀନା— ମୋର କେତୋଟି ସାଙ୍ଗ ଜୁଟିଗଲେ । ମୋ ବାପା ଜଣେ ଶିକ୍ଷକ । ସେ ଛୁଟି ଦିନରେ ଆମକୁ କାହାଣୀ ଶୁଣାନ୍ତି । ତାଙ୍କ କାହାଣୀ ପରିରାଜଙ୍କର ଗଳ୍ପ ନୁହେଁ କି ସେଥିରେ ମନଗଢ଼ା କିଛି ନ ଥାଏ । ତାଙ୍କ କଥାରେ ରହିଥାଏ କେତେକ ସତ ଘଟଣା । ଆମକୁ ପୁରାଣ ଶୁଣିବାପରି ଲାଗେ । ବାପା ଆରମ୍ଭ କଲେ—

"ଆଦିମ ଯୁଗର କଥା । ଘାଉଡ଼ ବଣ ଜଙ୍ଗଲରେ ପୂରିଥାଏ । ବାଘ, ସିଂହ, ଭାଲୁ, ସାପ, ହରିଣ, ମୟୂର ନିର୍ଭୟରେ ବିଚରଣ କରୁଥାଆନ୍ତି । ସ୍ଥାନେ ସ୍ଥାନେ ମୁନି ଋଷିମାନଙ୍କ ଆଶ୍ରମ ଥାଏ । ସେମାନେ ତପସ୍ୟାରେ ମଗ୍ନ ଥାଆନ୍ତି । ନିଜ ପାଇଁ ନୁହେଁ । ମଣିଷ ସମାଜର ମଙ୍ଗଳ ପାଇଁ ସେମାନେ ତପସ୍ୟା କରୁଥାଆନ୍ତି ।

ଜଣେ ଋଷିଥିଲେ । ସେ ଦିନେ ଅରଣ୍ୟରେ ବୁଲୁଥାଆନ୍ତି । ନାନା ରଙ୍ଗ ବେରଙ୍ଗର ଫୁଲ ଫୁଟିଛି । କେଉଁଠୁ ଫୁଲର ମହକ ଭାସି ଆସୁଛି । କେଉଁଠି ବାଘ, ଭାଲୁଙ୍କର ଗର୍ଜନ ଶୁଭୁଛି । କେଉଁଠି ଶାନ୍ତ ଶିଷ୍ଟ ମୃଗୁଣୀଟିଏ ସାଙ୍ଗରେ ପିଲାଛୁଆଙ୍କୁ ଧରି ଢଳି ଢଳି ବୁଲୁଛି । ପ୍ରକୃତିର ଏହି ଅପୂର୍ବ ସୌନ୍ଦର୍ଯ୍ୟରେ ଋଷି ଆତ୍ମହରା ହୋଇପଡ଼ିଲେ ।"

ରୀନା ପଚାରିଲା— "ମଉସା, ବାଘ ସିଂହଙ୍କ ଗର୍ଜନ ଶୁଣି ଋଷିଙ୍କୁ ଡ଼ର ଲାଗିଲା ନାହିଁ ?"

ବାପା କହିଲେ — "ନାହିଁରେ ପିଲେ, ଏବେ ଯିନା ଆମେ ବାଘ ଭାଲୁଙ୍କୁ ଦେଖି ଛାନିଆଁ ହେଉଛୁ, ସେତେବେଳେ ସେପରି ନଥିଲା । ମୁନିଋଷିମାନେ ନିଜ ଦେହକୁ ତୁଚ୍ଛ ମଣୁଥିଲେ । ଆତ୍ମାକୁ ବଡ଼ କରି ଦେଖୁଥିଲେ ।

" ସକଳ ଦେହେ ନାରାୟଣ
ବସନ୍ତି ଅନାଦ କାରଣ ।"

"ଏହି ବାଣୀକୁ ସେମାନେ ଅକ୍ଷରେ ଅକ୍ଷରେ ପାଳୁଥିଲେ । ବାଘ, ସିଂହ ମୁନିଋଷଙ୍କ ପାଖରେ ଘରର ଗାଈ ବାଛୁରୀ ପରି ଚାଲୁଥିଲେ ।

"ହଉ ଏବେ ଶୁଣ । ସୁଲୁସୁଲିଆ ବାଆ ବହି ଆସିଲା । ଋଷି ଦେଖିଲେ କୌଣସି ଏକ ସ୍ଥାନରୁ ଧଳା ଧଳା ତନ୍ତୁଗୁଡ଼ିଏ ଭାସି ଆସୁଛି । ନିରୀକ୍ଷଣ କଲେ । ଦିଗଧରି ଚାଲିଲେ । ପହଞ୍ଚିଲେ ଏକ ଉଦ୍ଭିଦ ମୂଳରେ । ଗୋଟିଏ ଦୁଇଟି ଗଛରେ କେତୋଟି ଶୁଖିଲା ଫଳ ଫାଟି ଯାଇଛି । ତାହାରି ଭିତରୁ ତନ୍ତୁଗୁଡ଼ିକ ଉଡ଼ିବାରେ ଲାଗିଛି । ଋଷିଙ୍କ ମନରେ ଅପୂର୍ବ ଆନନ୍ଦ । ସେ ଫଳଟିକୁ ସ୍ପର୍ଶକଲେ । କଳା କଳା ମଞ୍ଜି-ଗୁଡ଼ିଏ ଥାଇ ତନ୍ତୁପୂର୍ଣ୍ଣ ଖୋସାଟିଏ ତାଙ୍କ ହାତକୁ ବାହାରି ଆସିଲା । ଋଷି କୁତୂହଳୀ ହୋଇ ଖୋସାରୁ ତନ୍ତୁକୁ ବାହାର କଲେ । ଟିପରେ ବୋଳିଲେ । ବାଃ ବେଶ ସୂତା ତ ବୋଲି ହେଉଛି । ତାଙ୍କ ମନରେ କେତେ କ'ଣ ଭାବନା ଜାଗି ଉଠିଲା । ଏହି ସୂତାରେ ଲୁଗା ବୁଣା ହୋଇପାରିବ । ବସ୍ତ୍ର ସମସ୍ୟାର ସମାଧାନ ହୋଇଯିବ । ତାଙ୍କ ଭାବନା ଥଳକୂଳ ପାଉନାହିଁ ।

ଆମେ ସବୁ ଏକ ଲୟରେ ଶୁଣୁଥାଉ । ମୁଁ ପଚାରିଲି— "ବାପା, ସେତେବେଳେ କ'ଣ ଲୋକେ ଲୁଗା ପିନ୍ଧୁ ନ ଥିଲେ ?"

ବାପା କହିଲେ, "ହଁ ପିନ୍ଧୁଥିଲେ । ମାତ୍ର କପା ସୂତାର ଲୁଗା ନୁହେଁ । କେହି ଗଛର ବକ୍କଳ, କେହି ବା ଜୀବଜନ୍ତୁଙ୍କ ଚର୍ମ ପିନ୍ଧି ଲଜ୍ଜା ନିବାରଣ କରୁଥିଲେ । ରେଶମ ବସ୍ତ୍ରର ପ୍ରଚଳନ ନ ଥିଲା । କପା ବାହାରି ନ ଥିଲା ।

"ମୁନିଋଷମାନେ ଥିଲେ ଆଦର୍ଶ ପୁରୁଷ । ଖାଇପିଇ ଅୟସରେ ଜୀବନ ବିତାଇବାକୁ ସେମାନେ ସୁଖ ମଣୁ ନ ଥିଲେ । ମନୁଷ୍ୟ ସଂସାରକୁ ଆସିଛି । ନିଜେ କିଛି ନୂଆ କଥା ସଂସାରକୁ ଦେଇଯିବ । କିଛି ନ ଦେଇ ଭୋଗ କରିବା ଅପରାଧ ବୋଲି ମଣୁଥିଲେ ।

"ଋଷି ଗଛରୁ ଫୁଟଚକ କାଢ଼ିନେଲେ । ନିଜ ଆଶ୍ରମରେ ମଞ୍ଜିଗୁଡ଼ିକ ଲଗାଇଲେ । ପାଣି ଦେଲେ । ଗଜାହେଲା । ଗଛହେଲା । ଫୁଲ ଫୁଟିଲା । ଖୋସା ବାହାରିଲା । ଖୋସା ପାକଳ ହୋଇ ଫାଟିଗଲା । ଧୋବ ଫର ଫର ଖୋସାଗୁଡ଼ିଏ ଉତ୍ପନ୍ନ ହେଲା । ତାଙ୍କ ମନରେ ଅପୂର୍ବ ଆନନ୍ଦ । ଋଷି ଏହାର ନାମଦେଲେ "କପା" ।

ସେ ଜଣେ କୃଷି ବିଶାରଦ ଥିଲେ । ଜଗତର ମଙ୍ଗଳପାଇଁ ସେ କପା ଚାଷ କଲେ । କପାଚାଷ ପ୍ରଣାଳୀ ଲେଖି ରଖିଲେ । ସେତେବେଳେ ଲୁହା ତାକୁଡ଼ି ନଥିଲା । କାଠ ତାକୁଡ଼ି ଥିଲା । ସେଇ କାଠ ତାକୁଡ଼ିରେ କପାରୁ ସୂତା କାଟିଲେ ।

ଏତିକିରେ ତାଙ୍କର ମନ ଶାନ୍ତ ହେଲାନାହିଁ । ଲୁଗାବୁଣା ତନ୍ତ ବାହାର କଲେ । ନିଜ ପ୍ରସ୍ତୁତ କପା ସୂତାରେ ଲୁଗା ବୁଣିଲେ । ମାତ୍ର କାଠ ତାକୁଡ଼ିରେ କଟାସୂତା ପାକଳ ନ ଥିବାରୁ ବାରମ୍ବାର ଛିଣ୍ଡିଲା । ଋଷି ଧ୍ୟାନରେ ବସିଲେ । କାର୍ଯ୍ୟରେ ସିଦ୍ଧିଲାଭ କରିବା ସେତେବେଳେ ଥିଲା ତପସ୍ୟା । ସେ ଧ୍ୟାନରେ ବସି ଈଶ୍ୱରଙ୍କୁ ଆଉ କିଛି ମାଗିଲେ ନାହିଁ । କହିଲେ, "ପ୍ରଭୋ, ବୁଣବାବେଳେ ମୋର ସୂତା ବାରମ୍ବାର ନ ଛିଡୁ । ମୋର ମନ ଧ୍ୟାନ ଏକ ହେଉ । ମୋର ଲୁଗା ବୁଣିବା ସଫଳହେଉ ।"

" ଦେବା ମା ତନ୍ତୁ ଛେଦି ବାୟତଃ ।"

"ପ୍ରଭୁ ତାଙ୍କର ଡ଼ାକ ଶୁଣିଲେ । ସେ ପରିଶେଷରେ ନିଜ ହାତକଟା ସୂତାରେ ଖଣ୍ଡିଏ କପଡ଼ା ବୁଣିବାରେ ସଫଳ କ ହେଲେ ।

"ମାନବ ସଭ୍ୟତାକୁ ଏହାହିଁ ହେଲା ପ୍ରଥମ କପାସୂତା ଲୁଗା । କପାଚାଷ, ସୂତାକଟା, ଲୁଗାବୁଣା ଉପରେ ଗବେଷଣ କରି ଋଷି ବହୁ ନୂଆ ନୂଆ ତଥ୍ୟ ଜଣାଇ ଦେଇଗଲେ । ପିଲ ମନେରଖ ଏହା ହେଲା କପାଲୁଗାର ଆଦି କାହାଣୀ ।"

ଆମେ ଏକ ଧ୍ୟାନରେ ଶୁଣୁଥାଉ । ଆମେ ସମସ୍ୱରରେ ପଚାରି ଉଠିଲୁ, "ଏପରି ଜଣେ ପରୋପକାରୀ ଆବିଷ୍କାରକ କିଏ ? ତାଙ୍କର କ'ଣ ନା ନାହିଁ ?"

ବାପା କହିଲେ, "ତୁମେମାନେ କଥାଟା ଠିକ୍ ଧରିପାରିଛ । ସେ ହେଉଛନ୍ତି, ଋକ୍ ବେଦର ଋଷି । ନାଁ ଟା ତାଙ୍କର 'ଗୃତ୍ସମଦ' । ଖାଲି ସେତିକି ନୁହେଁ । ସେ ଥିଲେ ଜଣେ ଗଣିତଜ୍ଞ । ତାଙ୍କ ପୂର୍ବରୁ ମିଶାଣ ବାହାରିଥିଲା । ଗୃତ୍ସମଦ ଗୁଣନ ଉଦ୍ଭାବନ କଲେ । ଗୃତ୍ସମଦ କପାବସ୍ତ୍ର ବାହାର କରି ନ ଥିଲେ, ଆଜି ଆମେ ସମସ୍ତେ ଉଲଗ୍ନ ରହୁଥାଆନ୍ତେ । ଏବେ ସଂସାରରେ କୋଟି କୋଟି ଲୋକ ଜନ୍ମୁଛନ୍ତି । ସେମାନଙ୍କ ପାଇଁ ଏତେ ରେଶମଲୁଗା ଆସନ୍ତା କୁଆଡୁ ? ଗୁଣନ ସୂତ୍ର ନ ଥିଲେ ହିସାବ କେତେ ଜଟିଳ ହେଉ ଥାଆନ୍ତା । ଗୃତ୍ସମଦ କେଉଁ କାଳରୁ ଗଲେଣି । ମାତ୍ର ମଣିଷ ସଭ୍ୟତା ଥିବାଯାଏ ସେ ଅମର ହୋଇ ରହିଥିବେ ।"

ବିଶ୍ୱମ୍ଭର ବିଦ୍ୟାପୀଠ, ପୁରୀ ।



ନାତୁଣୀର ଆଜି ବଡ଼ ଶରଧା
ଚଉକି ଉପରେ ସାଜିଛି ରାଧା ।

# ତ୍ୟାଗୀ ଡଃ. ରାଜେନ୍ଦ୍ର ପ୍ରସାଦ

ଶ୍ରୀ ସତ୍ୟଶଙ୍କର ଦତ୍ତ

ପ୍ରତ୍ୟେକ ଯୁଗରେ ପୃଥିବୀ ପୃଷ୍ଠରେ ମହାପୁରୁଷମାନେ ଆବିର୍ଭାବ ହୋଇ ସେମାନଙ୍କ ଆଦର୍ଶ ଓ ତ୍ୟାଗ ବଳରେ ମାନବ ସମାଜକୁ ପଥ ପ୍ରଦର୍ଶନ କରିଆସିଛନ୍ତି । ସ୍ୱାଧୀନତା ସଂଗ୍ରାମରେ ଯେଉଁ ସମାଜକୁ ... ବିଶିଷ୍ଟ ଛଜଣ ଦେଶପ୍ରେମୀ ଥିଲେ,ସେମାନଙ୍କ ମଧ୍ୟରୁ ସାଧାରଣ-ତନ୍ତ୍ର ଭାରତର ସର୍ବପ୍ରଥମ ଅପ୍ରତିଦ୍ୱନ୍ଦ୍ୱୀ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ଅନ୍ୟତମ । ସେ ତାଙ୍କର ତ୍ୟାଗ, ଆଦର୍ଶ, ନିଷ୍ଠା, ମିଷ୍ଟଭାଷୀ ବଳରେ ଦେଶର ବିଭିନ୍ନ ସମ୍ପ୍ରଦାୟ ଓ ଦଳ ମଧ୍ୟରେ ସର୍ବଶ୍ରେଷ୍ଠ କର୍ମୀରୂପେ ପରିଚିତ ହୋଇଥିଲେ । ଡଃ ପ୍ରସାଦ ଏହି ଗୁଣ ଗୁଡ଼ିକର ଅଧିକାରୀ ହୋଇଥିବାରୁ ଜାତିର ଜନକ ମହାତ୍ମାଗାନ୍ଧୀ ତାଙ୍କୁ "ଅଜାତଶତ୍ରୁ" **ନାମରେ** ନାମିତ କରିଥିଲେ । ଅର୍ଥାତ ଏହାର କେହି ଶତ୍ରୁ ନାହାନ୍ତି । ସ୍ୱାଧୀନତା ଆନ୍ଦୋଳନ ସମୟରେ ସେ ଉଭୟ ଜାତୀୟ କଂଗ୍ରେସ ଓ ମୁସଲିମଲିଗ୍ ଦଳରେ ସର୍ବାଦୃତ ହୋଇଥିଲେ ।

ସେହି ତ୍ୟାଗବୀର ଡଃ ରାଜେନ୍ଦ୍ର ପ୍ରସାଦ ୧୮୮୪ ମସିହା ଡିସେମ୍ବର ମାସ ୩ ତାରିଖ ଦିନ ବିହାର ପ୍ରଦେଶର ଶରଣ ଜିଲ୍ଲା ଅନ୍ତର୍ଗତ ଜୀରା-ଦେଈ ଗ୍ରାମରେ ଏକ ମଧ୍ୟବିତ୍ତ ନୈଷ୍ଠିକ ହିନ୍ଦୁ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କ ଭାଷାରେ "ତୁଳସୀ ତୁଇ ପତ୍ରରୁ ବାସେ, ଗିହୁଆଡି ଦୁଇ ପତ୍ରରୁ ବୁଝାଇ ହୁଏ" ତାଙ୍କର ବାଲ୍ୟକାଳରୁ ହିଁ ଏହା ପ୍ରତୀତ ହେଉଥିଲା ଯେ, ସେ ଜଣେ ମହାନ ବ୍ୟକ୍ତିଭାବରେ ଦେଶ ବିଦେଶରେ ପରିଚିତ ହେବେ । ସେ ଛାତ୍ରାବସ୍ଥାରେ ବିଭିନ୍ନ ପରୀକ୍ଷାମାନଙ୍କରେ ସବୁବେଳେ ପ୍ରଥମ ସ୍ଥାନ ଅଧିକାର କରିଆସୁଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରେ ବିଭିନ୍ନ ପରୀକ୍ଷାମାନଙ୍କରେ ଏହି ଭାବରେ କୃତକାର୍ଯ୍ୟ ହୋଇଥିଲେ । ସେ ବିହାର, ଓଡ଼ିଶା, ଆସାମ ଓ ବେଙ୍ଗଲକୁ ମିଶାଇ ସମଗ୍ର ଉତ୍ତର ଭାରତରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲେ । ଓକିଲାତି ପାଶ୍ କଲାପରେ ରାଜେନ୍ଦ୍ର ବାବୁ ପ୍ରଥମେ କଲିକତା ହାଇକୋର୍ଟ ଓ ପରେ ପାଟନା ହାଇକୋର୍ଟରେ ଆଇନ ବ୍ୟବସାୟ କରିଥିଲେ । ସେ ଉପରୋକ୍ତ ହାଇକୋର୍ଟ ମାନଙ୍କରେ ନିଜର ଜ୍ଞାନବଳରେ ଜଣେ ସର୍ବଶ୍ରେଷ୍ଠ ଆଇନଜ୍ଞ ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଠିକ୍ ଯେତେବେଳେ ସେ ବିଶିଷ୍ଟ ଆଇନଜ୍ଞରୂପେ ପରିଚିତ ହେଉଛନ୍ତି, ସେତିକି ବେଳେ ଅର୍ଥାତ୍ ୧୯୧୮ ମସିହାରେ ବିହାରର ଚମ୍ପାରଣଠାରେ ଗାନ୍ଧିଜୀଙ୍କର ସଂସର୍ଶରେ ଆସି ଆଇନ ବ୍ୟବସାୟକୁ ଜଳାଞ୍ଜଳି ଦେଇ ସ୍ୱାଧୀନତା ଆନ୍ଦୋ-ଳନରେ ନିଜକୁ ସାମିଲ କଲେ । ତାଙ୍କର ଏତାଦୃଶ କାର୍ଯ୍ୟରେ ପରିବାର ବର୍ଗ ଘୋର ଚିନ୍ତାରେ ପଡ଼ିଗଲେ । କିପରି ସଂସାର ଚଳିବ! ତାଙ୍କର ବଡ଼ଭାଇ ମହେନ୍ଦ୍ର ପ୍ରସାଦଙ୍କର ଆଶାଥିଲା ରାଜେନ୍ଦ୍ର ବାବୁ ଓକିଲାତି କଲେ ପରିବାରର ବୋଝ ତାଙ୍କଠାରୁ କିଛିଟା ଲାଘବ ହେବ । ମାତ୍ର ଡଃ ରାଜେନ୍ଦ୍ର ପ୍ରସାଦ କୌଣସି କଥାକୁ ଚିନ୍ତା ନକରି ଦେଶକୁ ସ୍ୱାଧୀନ କରିବାପାଇଁ ବାହାରି ପଡ଼ିଲେ । ଏପରି ତ୍ୟାଗ କ୍ୱଚିତ୍ ଲୋକଙ୍କ ପାଖରେ ଦେଖାଯାଏ ।

କଂଗ୍ରେସରେ ଯୋଗଦାନ କଲାପରେ ଡଃ ରାଜେନ୍ଦ୍ର ପ୍ରସାଦଙ୍କ ଜୀବନ ଆରମ୍ଭ ହେଲା ଘୋର ଦୁଃଖ ଓ ଯନ୍ତ୍ରଣା, ବିଭିନ୍ନ ସମୟରେ ବହୁବାର ଜେଲ ଭୋଗିଥିଲେ ମଧ୍ୟ ସେ କେବେହେଲେ ରାଗି ପଡ଼ିନଥିଲେ । ଭାରତୀୟ ଜାତୀୟ କଂଗ୍ରେସର ସେ ୩ଥର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଏହା ଜାତୀୟ କଂଗ୍ରେସର ଅନ୍ୟ କୌଣସି ନେତାଙ୍କ ପକ୍ଷରେ ସମ୍ଭବପର ହୋଇପାରି ନଥିଲା ।

୧୯୪୬ ମସିହାରେ ଯେତେବେଳେ ଜବାହାରଲାଲ ନେହେରୁଙ୍କ ନେତୃତ୍ୱରେ ଜାତୀୟ ସରକାର ଗଠନ କରାଗଲା, ସେତେବେଳେ ଡଃ ରାଜେନ୍ଦ୍ର ପ୍ରସାଦ ତାଙ୍କ ମନ୍ତ୍ରୀ ପରିଷଦରେ ଖାଦ୍ୟ ଓ କୃଷି ମନ୍ତ୍ରଣାଳୟର ଦାୟିତ୍ୱରେ ରହିଲେ । ନିଜର ପାରଦର୍ଶିତା ବଳରେ ପରବର୍ତ୍ତୀ ସମୟରେ ୧୯୪୯ ମସିହାରେ ସେ ସାଧାରଣତନ୍ତ୍ର ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ସର୍ବପ୍ରଥମ ରାଷ୍ଟ୍ରପତି ନିର୍ବାଚିତ ହୋଇଥିଲେ ଓ ସେ ହିଁ କେବଳ ଦୀର୍ଘ ୧୨ ବର୍ଷ ପର୍ଯ୍ୟନ୍ତ ସେପରି ଏକ ସର୍ବୋଚ୍ଚ ସମ୍ମାନୀୟ ପଦରେ ଅଧିଷ୍ଠିତ ହୋଇପାରିଥିଲେ । ତାଙ୍କ ପରେ ଅନ୍ୟ କୌଣସି ନାଗରିକ ୨ଥର ( Two Terms ) ସେହିପଦରେ ଅଧିଷ୍ଠିତ ହୋଇ ପାରିନାହାନ୍ତି । ସର୍ବବୃହତ୍ ରାଷ୍ଟ୍ରରେ ରାଷ୍ଟ୍ରପତି ପଦରେ ଅଧିଷ୍ଠିତ ହେବା ପରେ ପରେ ତାଙ୍କର ପ୍ରଥମ ତ୍ୟାଗ ହେଲା ସଂବିଧାନ ତାଙ୍କୁ ରାଷ୍ଟ୍ରପତି ଭାବରେ ଯେଉଁ ୧୦,୦୦୦ ଟଙ୍କା ଭତ୍ତା ଦେବାର ବ୍ୟବସ୍ଥା ଥିଲା ତାକୁ କମାଇ ଦେଇ ୫,୦୦୦ ଟଙ୍କାରୁ କମ୍ ଭତ୍ତା ନେଉଥିଲେ । ରାଷ୍ଟ୍ରପତି ନିର୍ବାଚିତ ହେବାପରେ ସେ ରାଷ୍ଟ୍ରପତି ଭବନରେ ରହି ନିଜକୁ ଅତି ଅସହାୟ ମନେକରୁଥିଲେ । ସେ କହୁଥିଲେ "ମୋତେ ଏଠାରେ ଅଣନିଶ୍ୱାସୀ ବୋଧ ହେଉଛି" । ସେ ରାଷ୍ଟ୍ରପତି ଭବନର ଜାକଜମକକୁ ନାପସନ୍ଦ କରୁଥିଲେ । କେବେ କେବେ ବନ୍ଧୁମାନଙ୍କ ଗହଣରେ କଥା ପ୍ରସଙ୍ଗରେ ଡଃ ପ୍ରସାଦ କହୁଥିଲେ ଯେ, ଯେତେବେଳେ ଆମେ-ସବୁ ଜେଲରେ ଥିଲୁ, ଜଣେ ଜଗୁଆଳୀ ପ୍ରାୟ ୧୨ ଜଣ କିମ୍ବା ତାଠାରୁ ଅଧିକ ଲୋକଙ୍କୁ ଜଗୁଥିଲା । ମାତ୍ର ଏଠାରେ ଜଣକୁ ଏକ ଡର୍ଜନ

ପର୍ଯ୍ୟନ୍ତ ଜଗୁଆଳି ଜଗୁଛନ୍ତି । ଏହା ତାଙ୍କୁ ଅତି ଅଶ୍ରୁସ୍ତିକର ବୋଧ ହେଉଥିଲା । ସେ ରାଷ୍ଟ୍ରପତି ଭବନର ସମସ୍ତ ପ୍ରକାର ଆଡ଼ମ୍ବର ଏବଂ ସାଜସଜ୍ଜାକୁ ସୀମିତ କରି ଦେଇଥିଲେ । ସରକାରୀ କାର୍ଯ୍ୟ ବ୍ୟତୀତ ଯଦି ନିଜର କାର୍ଯ୍ୟପାଇଁ ଟେଲିଫୋନ ବ୍ୟବହାର କରୁଥିଲେ ବା ନିଜର ଜ୍ଞାତୀ କୁଟୁମ୍ବମାନେ ବ୍ୟବହାର କରୁଥିଲେ, ତାହାଲେ ତାର ଖର୍ଚ୍ଚ ସେ ନିଜ ଭରାରୁ ଦେଉଥିବାର ଅନେକ ଦୃଷ୍ଟାନ୍ତ ଅଛି ।

ସେ ଗୋଟିଏ ଅତି ରକ୍ଷଣଶୀଳ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଯେଉଁ ପରିବାରର ସଭ୍ୟମାନେ ଅବ୍ରାହ୍ମଣ ଦ୍ୱାରା ପ୍ରସ୍ତୁତ ଖାଦ୍ୟକୁ ସ୍ପର୍ଶ କରୁନଥିଲେ । କିନ୍ତୁ ରାଜେନ୍ଦ୍ର ବାବୁ ସେ ସବୁକୁ ପସନ୍ଦ କରୁନଥିଲେ । ସେ ସର୍ବପ୍ରଥମେ ସମାଜରେ ଥିବା ବିଭିନ୍ନ ଅନ୍ଧବିଶ୍ୱାସ ଏବଂ ଯୌତୁକ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ।

ଡ଼ଃ ରାଜେନ୍ଦ୍ର ପ୍ରସାଦ ଚାହୁଁଥିଲେ ଦେଶର ପ୍ରତ୍ୟେକ ସ୍ଥାନରେ ଥିବା ବିଦ୍ୟାଳୟଗୁଡ଼ିକର ପରିଚାଳନା ଦାୟିତ୍ୱ କେନ୍ଦ୍ର ସରକାରଙ୍କ ହାତରେ ରହୁ ଏବଂ ସେହି ବିଦ୍ୟାଳୟମାନଙ୍କରେ ଛାତ୍ରଛାତ୍ରୀ ମାନଙ୍କୁ ହିନ୍ଦି ଓ ଇଂରାଜୀ ମାଧ୍ୟମରେ ଶିକ୍ଷାଦାନ କରାଯାଉ । ଏହା ଯଦ୍ୟପି ପୂର୍ଣ୍ଣାଙ୍ଗଭାବରେ ସମ୍ଭବପର ହୋଇ ପାରିନାହିଁ ତଥାପି ଆଜି ଯେଉଁ ସବୁ ଶତାଧିକ କେନ୍ଦ୍ରୀୟ ବିଦ୍ୟାଳୟ ମୁଣ୍ଡ ଟେକିଛି ଏଗୁଡ଼ିକ ତାଙ୍କରି ପ୍ରଚେଷ୍ଟା, ତାଙ୍କର ଇଚ୍ଛାଥିଲା । ଏପ୍ରକାର ଶିକ୍ଷା ଦାନ ଦ୍ୱାରା ଭାରତବର୍ଷ ଏକ ରାଷ୍ଟ୍ରୀୟ ଭାଷାଭାଷୀ ରାଷ୍ଟ୍ରରେ ପରିଣତ ହୋଇ ପାରିବ ।

୧୯୬୨ ମସିହାରେ ଭାରତର ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେଇ ସେ ସଦାକତ ଆଶ୍ରମରେ ଅବସ୍ଥାନ କରି ଚୀନା ଆକ୍ରମଣର ପ୍ରବଳ ବିରୋଧପାଇଁ ଜନ ଚେତନା ଜାଗରଣ କରିବାପାଇଁ ସକ୍ରୀୟଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୬୩ ମସିହା ଫେବୃଆରୀ ୨୨ ତାରିଖ ଦିନ ସେହି କର୍ମମୟ ଜୀବନର ପାଟନା ଠାରେ ଅବସାନ ଘଟିଲା । ଡ଼ଃ ପ୍ରସାଦଙ୍କ ଆଦର୍ଶ ଓ ତ୍ୟାଗ ଏ ଜାତି ପ୍ରତି ପଥ ପ୍ରଦର୍ଶକ ହୋଇରହୁ, ଏହାହିଁ ଭଗବାନଙ୍କ ନିକଟରେ ଅଳି ।

ପୋ : ଅ : ଉଦଳା, ନାଗପାଳ
ଜିଲ୍ଲା—ମୟୂରଭଞ୍ଜ




ନୂଆଦିଲ୍ଲୀରେ ଅନୁଷ୍ଠିତ ପ୍ରଦର୍ଶନୀରେ ଓଡ଼ିଶା ମଣ୍ଡପ

# ଆମେ ଓ ଆମର ଆଚରଣ ବିଧି

ଶ୍ରୀ ମଙ୍ଗୁଳୁ ଚରଣ ବିଶ୍ୱାଳ

ଆମେମାନେ ଆଜି ଏମିତି ଗୋଟାଏ ଛକରେ ଠିଆ ହୋଇଛେ । ଯେ ନିଜକୁ କୌଣସି ମୁହୂର୍ତ୍ତରେ ନିରାପଦ ମନେ କରୁନେ । ସର୍ବଦା ବିପଦର ଆଶଙ୍କା କରୁଛେ । କୌଣସ କଥାରେ ହଠାତ୍ ମତାମତ ଦେଉନେ, କୌଣସି ଅନ୍ୟାୟର ପ୍ରତିବାଦ କରୁନେ । କେବଳ ଏତିକି କହୁଛେ ଆଖିଥିଲୁ ଦେଖୁଥିବ, କାନଥିଲୁ ଶୁଣୁଥିବ । ଏଇଟାତ ମଣିଷ ସମାଜ । ସମାଜରେ ଆମେ ବାସ କରୁଛେ । ଏଟା ତ ବଣ ଜଙ୍ଗଲ ନୁହେଁ । ଏଠି ବାଘ ଭାଲୁ ନାହାନ୍ତି । ତେବେ ଭୟ କରୁଛୁ କାହାକୁ ? କ'ଣ ଏଇ ମଣିଷକୁ ? ରେଲଓ୍ୱେ ପ୍ଲାଟଫର୍ମ, ବସ୍‌ଷ୍ଟାଣ୍ଡ, ସିନେମା ହଲ ଯେଉଁଠାକୁ ଯାଅ ସେଠି ଧକ୍କା ଧକ୍କି । ନିୟମ ଅଛି, ସମସ୍ତେ ଲାଇନରେ ଛିଡା ହେବେ । ଜଣକପରେ ଜଣେ ଟିକେଟ ନେବେ । ଆମେ ଏତେଟା ଧୈର୍ଯ୍ୟହୀନ ଓ ଅସହିଷ୍ଣୁ ଯେ ଆମର ଆଗ ପଛର ବିଚାର ନାହିଁ । ଆମ ଆମ ଭିତରେ ପ୍ରବଳ ଠେଲା ପେଲ । ଆମେ ଆଗେ ଟିକେଟ ନେବୁ । ଅନ୍ୟ କେହି ନେଉ କିମ୍ବା ନ ନେଉ କିମ୍ବା ଅସୁବିଧାର ସମ୍ମୁଖୀନ ହେଉ ସେଥିରେ ଆମର ଯାଏ ଆସେ କେତେ ? କାରଣ ଆମ କଥା କେବଳ ଆମେ ଜାଣୁ । ଆପେ ବଞ୍ଚିଲେ ବାପର ନାଆଁ ! ଉପଯୋଗ ସ୍ଥାନମାନଙ୍କରେ ଏମିତି ଜୋକୁଆ ଭୟ ସଂଚରି ଯାଇଛି ଯେ ସେ ସ୍ଥାନମାନଙ୍କୁ ଯିବା ପୂର୍ବରୁ ଆମର ହୃତ୍‌କମ୍ପ ହୁଏ । ମୁଁ ଏକଦା ମୋ ପରିବାର ସହିତ ଟ୍ରେନରେ ଯାଉଥିଲି । ମୋ ସ୍ତ୍ରୀ ଅସୁସ୍ଥ ଥାଆନ୍ତି । ତାଙ୍କର ପିଲାପିଲି ହେବାର ଥାଏ । ଏକ ଷ୍ଟେସନରେ ଗାଡ଼ି ରହିଲା । ଆମର କମ୍ପାର୍ଟମେଣ୍ଟ ଭିତରକୁ ତିନି ଗୁଣ୍ଡିଜଣ ଯୁବକ ପଶି ଆସିଲେ । ତାଙ୍କ ବେଶ ପୋଷାକ ଦେଖି ମୁଁ ଶଙ୍କି ଗଲି । ଆମ ସାମ୍ନା ସିଟରେ ସେମାନେ ବସିଲେ ! କିଛି ସମୟପରେ ମୋ ସ୍ତ୍ରୀକୁ ଆକ୍ଷେପକରି ଗୁଡାଏ ଅଶ୍ଳୀଳ ମନ୍ତବ୍ୟ ଆରମ୍ଭ କରିଦେଲେ । ସେମାନଙ୍କର ମନ୍ତବ୍ୟ ଶୁଣି ବୁନ୍ଦୁ ମୋର ଜଳିଯାଉଥାଏ । ତଥାପ ନିଜକୁ ଟିକେ ସଂଯତ କରିନେଲି । ସେମାନଙ୍କୁ ଅନୁରୋଧକରି କହିଲି ଆପଣମାନେ ଏମିତି ଭାଷା ବ୍ୟବହାର କରନ୍ତୁନାହିଁ । ଜଣେ ଯୁବକ କହିଲେ ହେଉ ଆଜ୍ଞା ଏଣିକି ଆପଣଙ୍କ ଅନୁରୋଧ ରକ୍ଷା କରି ଶୁଦ୍ଧଭାଷା ପ୍ରୟୋଗ କରିବୁ । ସେମାନେ ପ୍ରଥମେ ଅଶ୍ଳୀଳ ଶବ୍ଦଗୁଡାକ ଇଂରାଜୀ ଭାଷାରେ କହୁଥିଲେ । ସେ ଇଂରାଜୀ ଶବ୍ଦମାନଙ୍କର ଶୁଦ୍ଧ ଓଡ଼ିଆ ବ୍ୟବହାର କରିବାକୁ ଲାଗିଲେ । ସେ ଭାଷା ଶୁଣି ସେ କମ୍ପାର୍ଟମେଣ୍ଟର ସମସ୍ତ ଭଦ୍ରଲୋକ ଓ ଭଦ୍ର ମହିଳା ତଳକୁ ମୁହଁ ପୋତି ବସିଲେ । ତଥାପି ଜଣେ ଭଦ୍ରଲୋକ କହିଲେ ଯେଉ ଆପଣଙ୍କର ମାଆଭଉଣୀତ ଅଛନ୍ତି । ଏମିତି କ'ଣ ଆଚରଣ ଦେଖାଉଛନ୍ତି । ତାଙ୍କର ଏକଥା ଶୁଣି ବାଘ ଶିକାର ଉପରକୁ ଝାମ୍ପ ଦେଲାପରି ସେମାନେ ତାଙ୍କ ଉପରକୁ ଲମ୍ଫ ପ୍ରଦାନ କଲେ । ସେଥିମଧ୍ୟରୁ ଜଣେ ସିଧା ତାଙ୍କ କାଲରକୁ ଧରିଲା । ଭଦ୍ରଲୋକ ଅନ୍ୟୋନୋପାୟ ହୋଇ କ୍ଷମା ମାଗିବା ଫଳରେ ଉତ୍ତେଜନା ହ୍ରାସ ପାଇଥିଲା । ତେବେ କହନ୍ତୁ ଏପରିପ୍ରେକ୍ଷୀରେ ଆମେ ବଞ୍ଚିବାତ ?

ଆଜି ଆମର କ'ଣ ହୋଇଛି କେଜାଣି ସବୁଠାରେ ବିଶୃଙ୍ଖଳା । ସ୍କୁଲ, କଲେଜରେ ଛାତ୍ର ବିଶୃଙ୍ଖଳା, କାରଖାନାରେ –ଧର୍ମଘଟ, ତାଲା ବନ୍ଦ, ଆନ୍ଦୋଳନ, ଅନଶନ ସବୁକିଛି ଚାଲିଛି । ଆମେ କହିପାରୁ ସହର ବଜାରରେ ଭିନ୍ନ ଭିନ୍ନ ଜାତି, ଭିନ୍ନ ଭିନ୍ନ ସଂପ୍ରଦାୟ, ଭିନ୍ନ ଭିନ୍ନ ଭାଷାଭାଷୀର ଲୋକ ବାସକରନ୍ତି । ତେଣୁ ସେ ଜାଗାମାନଙ୍କରେ ଗଣ୍ଡଗୋଳ ଲାଗିବା ସ୍ୱାଭାବିକ । କାରଣ ବହୁତଲୋକ ଯହିଁ ମିଳି, ଅବଶ୍ୟ ଉପୁଜଇ କଳି । ହେଲେ ଗାଆଁ ସହରରେ ସେକଥା ନାହିଁ । ସମସ୍ତେ ବାପା ମା ଦାଦା, ଭାଇ, ମଉସା, ପିଉସା । ସେସବୁ ମାଆ, ଭଉଣୀ,ବୁଢ଼ି, ଭାଉଜ, ମାଉସୀ ଓ ପିଉସୀ । ସମସ୍ତେ ଏକତ ଅଟନ୍ତି । ଗୋଟିଏ ପକ୍ଷୀର ପର । ସମସ୍ତେ ଗୋଟିଏ ରଜ୍ଜୁରେ ବନ୍ଧା । ହେଲେ ଆଜି ଗାଆଁମାନଙ୍କରେ ଦଳ ବାନ୍ଧ । ଦଳଦଳ । ସେମାନଙ୍କ ମଧ୍ୟରେ ଫଟାଫଟି । ପିଟାପିଟି । ପ୍ରବଳ ଉତ୍ତେଜନା । ମାରିମକଦ୍ଦମା । ଦାରୀ ସେଣ୍ଟ ଟାଉଟରୀ ।

ଯେଉଁ ରାସ୍ତାରେ ଆମେ ସବୁଦିନେ ଯିବା ଆସିବା କରୁଛେ, କେଉଁଠି ଗୋଡ଼ି ପଥର ଉଠିଗଲାଣି । ଯଦି ଟିକିଏ ଶ୍ରମ ସ୍ୱୀକାର କରି କେତେ ଗାଣ୍ଡୁଆ ମରମ ପକାଇ ଦେଲେ ଚଳିବ । ଆମର ସେ ଆଡକୁ ଦୃଷ୍ଟି ନାହିଁ । କହିବୋଲୁ, ସେଇଟା କ'ଣ ଆମର କାମ । ସେ ସବୁ ସରକାର କରିବେ । ଅବଶ୍ୟ ସରକାରଙ୍କ ଅନେକ କାମ ଅଛି । ସରକାରଙ୍କୁ ପୂର୍ଣ୍ଣ ସହଯୋଗ କରିବା ଆମର କର୍ତ୍ତବ୍ୟ ନୁହେଁ କି ? ଆମେ ଏଯାଏ ଜାତୀୟ ସଂପତ୍ତିକୁ ନିଜର ସଂପତ୍ତି ବୋଲି ମନେକରି ପାରିଲୁ ନାହିଁ । ଆମେ ଭାବି ନେଇଛେ ସରକାର ଓ ବ୍ୟକ୍ତି ପରସ୍ପରଠାରୁ ସଂପୂର୍ଣ୍ଣ ପୃଥକ୍ । ତେଣୁ ଜାତୀୟ ସଂପତ୍ତିକୁ ଧ୍ୱଂସ କିମ୍ବା ତୋଷରପାତ କରିବା କିମ୍ବା ଅବହେଳିତ କରିବା

ଆମର କାମ । ଆମେ ମଧ୍ୟ ତାହାନ୍ୟରେ କହିପାରୁ, କଂପାନୀକା ମାଲ୍; ଦରିଆମେ ଡାଲ । ଆମେ ଜାଣୁ ଜଙ୍ଗଲ ସୁରକ୍ଷା ଦ୍ୱାରା ଆମର ଅନେକ ଉପକାର ସାଧିତ ହୁଏ, ବର୍ଷା ହୁଏ, ବାତ୍ୟା ନିୟନ୍ତ୍ରଣ ହୁଏ, ମୃତ୍ତିକା ସଂରକ୍ଷଣ ହୁଏ । ମୁକ୍ତ ପରିବେଶ ସୃଷ୍ଟି ହୋଇପାରେ । ଏସବୁ ଜାଣି ମଧ୍ୟ ଜଙ୍ଗଲକୁ ମନଇଛା ନଷ୍ଟକରୁ । ସ୍ପଷ୍ଟ ଭାବରେ କୁହାଯାଇପାରେ ଯେତେସବୁ ଜାତୀୟ ସଂପତ୍ତି ନଷ୍ଟହୁଏ ସବୁ ଆମରି ଲାଗି ହୁଏ । ଯଦି ଆମେ ଜାତୀୟ ସଂପତ୍ତିର ରକ୍ଷଣାବେକ୍ଷଣ ପାଇଁ ଟିକିଏ ଦୃଷ୍ଟି ଦିଅନ୍ତେ, ନିଶ୍ଚିତଭାବେ ସେସବୁର ସୁରକ୍ଷା ହୋଇପାରନ୍ତା । ସେଥିପାଇଁ ଆମର ଆତ୍ମଶୁଦ୍ଧି ପ୍ରୟୋଜନ । ଆମେ ବିଜୁଳିବତୀ ବ୍ୟବହାର କରୁଛେ, ଟିକସ ଫାକିମାରୁଛେ । ଆମେ ଟ୍ରକ ମଟର ବ୍ୟବହାର କରୁଛେ, ମାତ୍ର ଶୁଳ୍କ ଠିକ୍ ସମୟରେ ପଇଠ କରୁନେ । ବ୍ୟବସାୟ କରୁଛେ, ଇନ୍‌କମ୍ ଟ୍ୟାକ୍‌ସ ଦେଉନେ । ଆମପାଇଁ ସରକାର କେତେଗୁଡ଼ିଏ ବିଭାଗ କରିଛନ୍ତି । ପ୍ରତ୍ୟେକ ବିଭାଗପାଇଁ କେତେଗୁଡ଼ିଏ ନିୟମ ମଧ୍ୟ ପ୍ରଣୟନ କରାଯାଇଛି । ସେ ନିୟମଗୁଡ଼ିକ ପ୍ରଜାମାନଙ୍କୁ ଶାସନ କରିବା ପାଇଁ ନୁହେଁ । ପ୍ରଜାମାନଙ୍କ ଖୋଦ ଉପକାରପାଇଁ । ମାତ୍ର ସେ ନିୟମକୁ ମାନିବାକୁ ଆମେ ସଂପୂର୍ଣ୍ଣ ନାରାଜ । ଯଦି କିଛି ଦୋଷତ୍ରୁଟି ଦେଖାଦେଲା, ଆମେ ସରକାରଙ୍କ ଉପରେ ଦୋଷ ଲଦିଦେଉ । ଆମର ଆଜି ଗୋଟାଏ ବଡ଼ ପ୍ରବୃତ୍ତି ହେଲା ଅନ୍ୟ ଉପରେ ଦୋଷ ଲଦିବା । ନିଜର ହଜାରେ ଦୋଷ ଥାଉ, ସେଆଡ଼କୁ ମୋଟେ ଦୃଷ୍ଟି ନାହିଁ ।

ଆମେ ସମସ୍ତେ ସ୍ୱାଧୀନ ଦେଶର ନାଗରିକ । ଯା ଭିତରୁ ଆମେ ଅଧିକାଂଶ ଶ୍ରମିକ, କୃଷକ, ଶିକ୍ଷକ, ଡାକ୍ତର, ଇଂଜିନିୟର, କର୍ମଚାରୀ ଓ ଅଫିସର । ପ୍ରତ୍ୟେକ ଗୋଟିଏ ଗୋଟିଏ ବୃତ୍ତି ନେଇ ଚଳିଛନ୍ତି ବା ଚଳୁଛନ୍ତି । ତେଣୁ ପ୍ରତ୍ୟେକ ସ୍ୱ ସ୍ୱ କର୍ତ୍ତବ୍ୟ ସଂପର୍କରେ ସଚେତନ ରହିବା ଆବଶ୍ୟକ । ଆମେ ଏମିତି ଚେତ୍ସ ହେବା ଆବଶ୍ୟକ ଯେ ଶିକ୍ଷକଙ୍କୁ କିମ୍ବା ଅନ୍ୟ କେହି କର୍ମଚାରୀଙ୍କୁ କେହି କହିବେ ନାହିଁ ଯେ ସେମାନେ ତାଙ୍କର କର୍ତ୍ତବ୍ୟ କରନ୍ତୁ । ସେମାନଙ୍କର ଉଚ୍ଚପଦସ୍ଥ ଅଫିସର ସେମାନଙ୍କ କାର୍ଯ୍ୟର ତଦନ୍ତ କରନ୍ତୁ । ଆମର କର୍ତ୍ତବ୍ୟଗତ ଆଚରଣ ବିଧି ଶୁଦ୍ଧ ଓ ପବିତ୍ର ହେଲେ ଦେଶ ମଧ୍ୟ ଉନ୍ନତି ପଥରେ ଅଗ୍ରସର ହେବ ।

ସଭାରେ କେହି ଜଣେ ଭାଷଣ ଦେଉଛନ୍ତି । ସେ କ'ଣ କହୁଛନ୍ତି, ପ୍ରଥମେ ଶୁଣିବା ଆମର କାମ । ତା'ପରେ ଆଲୋଚନା କିମ୍ବା ପର୍ଯ୍ୟାଲୋଚନା । ସେ କ'ଣ କହୁଛନ୍ତି ଶୁଣିବାକୁ ଆମର ଟିକିଏ ଧୈର୍ଯ୍ୟନାହିଁ । ଖାଲି ଆମେ ହିଁ ହିଁ ଫିଁ ଫିଁ । କିମ୍ବା ତାଳିମାରି ଅଥବା ପାଟିତୁଣ୍ଡ କରି ସେ ଭାଷଣକୁ ଉଣ୍ଡୁର କରୁ । ନିଜେତ ଶୁଣୁନାହିଁ । ଶୁଣିବାକୁ ଆଗ୍ରହୀ ଲୋକଙ୍କୁ ମଧ୍ୟ ଶୁଣାଇ ଦେଉନାହିଁ । ଆମ ଭିତରେ ସୁଧୀଜନ, ସୁଜ୍ଞଜନ, ବିଜ୍ଞଜନ ଓ ବୁଦ୍ଧିଜନ ବୋଲି ସେମିତି କିଛି ଭାବନାହିଁ । କାରଣ ଆମେ ଜାଣୁ, ଆମେ ଯାହା ଜାଣିଛୁ ଅନ୍ୟ କେହି ଜାଣି ନାହାନ୍ତି । ଅଥବା ଭାଷଣ ପ୍ରସଙ୍ଗରେ ଯିଏ ଯାହା କହିବ, ଆମେ ଆଗରୁ ଜାଣିଛୁ କିମ୍ବା ଆମଠାରୁ ଅଧିକ ଜାଣିଥିବା ଦ୍ୱିତୀୟବ୍ୟକ୍ତି ଏ ମହୀମଣ୍ଡଳରେ କେହି ନାହାନ୍ତି । ଆମର ଆଉ ଗୋଟାଏ ଧାରଣା: ଆମେ ସ୍ୱାଧୀନତା ପାଇଛୁ । ଯେଉଁଠି ପାରିବୁ ସେଇଠି ପାଟିତୁଣ୍ଡ କରିବୁ ; ତାଳିମାରିବୁ । ଯାହାକୁ ଯାହା କହିପାରିବୁ । ଏହାର ଅର୍ଥ ସ୍ୱାଧୀନତା ନୁହେଁ । ଏହାର ଅର୍ଥ ସ୍ୱେଚ୍ଛାଚାରିତା, ଉଚ୍ଛୃଙ୍ଖଳତା । ମୋଟ ଉପରେ କହିବାକୁ ଗଲେ ଆମେ ଶୃଙ୍ଖଳିତ ନୋହୁ । ଶୃଙ୍ଖଳା ଶିଖିବୁ କ'ଣ ? ତେଣୁ ସବୁ କ୍ଷେତ୍ରରେ ସ୍ୱାଧୀନତାର ଦ୍ୱାହିଦେଇ ବିଶୃଙ୍ଖଳା ସୃଷ୍ଟିକରୁ ।

ଆମର ପରଶ୍ରୀକାତରତା ବେଶୀ । ଅନ୍ୟର ସୌଭାଗ୍ୟ କିମ୍ବା ଶ୍ରୀବୃଦ୍ଧି ଦେଖିବାକୁ ସହ୍ୟ କରିପାରୁନା । ଈର୍ଷାରେ ଫାଟିପଡୁ । ସେ ଆମ ଆଗରେ କାହିଁକି ବଡ଼ଲୋକ ହେବ ? ତାର ଗୋଡ଼ଟା ଝିଙ୍କିଦେଉ । ସେ ତଳେ ପଡ଼ିଯାଇ ରକ୍ତାକ୍ତ ହେଲେ ଆମର ପରମ ଆନନ୍ଦ । ତାର ପରିଶ୍ରମ, ସାଧନା, ଅଧ୍ୟବସାୟ ବଳରେ ବଡ଼ଲୋକ ହୋଇଛି, ଆମେ ସେଇଟା ଭାବୁ ନାହିଁ ।

ଆମେ ଏଯାଏ ଜାତିକୁ ଓ ଭାଷାକୁ ଭଲପାଇ ଶିଖି ନାହୁଁ । କିମ୍ବା ଭଲ ପାଇବା ଶିଖିବାକୁ ଆମର ଆଗ୍ରହ ନାହିଁ । ଆମେ ଏତେଟା ସ୍ୱାର୍ଥପର ଓ ଆତ୍ମକୈନ୍ଦ୍ରିକ ଯେ ଆମର ଜାତି ପ୍ରୀତି ନାହିଁ କି ଭାଷା ପ୍ରୀତି ନାହିଁ । କେବଳ ଆମ ପାଖରେ ନିଜସ୍ୱ ପ୍ରୀତିଟି ଅଛି । ଆମେ ଜାଣୁ ଜାତିରୁ କଣ ମିଳିବ । ଆମେ ଜାଣୁ ଭାଷାରୁ କ'ଣ ମିଳିବ । ଜାତି ଓ ଭାଷାକୁ ନେଇ କ'ଣ ଘଟିବ । ସବୁଦେଶ ଦ୍ରୁତ ଗତିରେ ଆଗେଇ ଥିଲାବେଳେ, ଏଇଥି କାରଣରୁ ଆମେ ଦ୍ରୁତଗତିରେ ପଛେଇଲେଣି । ଏକଥା ଆମେ ଏ ଯାଏ ହୃଦୟଙ୍ଗମ କରିନାହୁଁ । କାରଣ ଆମର ନିଦ ଭାଙ୍ଗିନାହିଁ । ସେ କୁମ୍ଭକର୍ଣ୍ଣନିଦ କେବେ ଭାଙ୍ଗିବ ତାହା ପରମେଶ୍ୱରଙ୍କୁ ଜଣା ।

ଆମେ ବେଶ୍ ସୁବିଧାବାଦୀ । ଆମେ କିଛି କରନ୍ତୁ ନାହିଁ । କିଏ ଆମପାଇଁ କରି ଦିଅନ୍ତା । ଆମକୁ କିଏ ଖୁଆଇ ଦିଅନ୍ତା । ଆମେ ଖାଆନ୍ତୁ । ଇତିହାସ କହେ; ଯେତେଦେଶ ସବୁ ଆଜି ଉନ୍ନତିର ଶୀର୍ଷସୀମାରେ ପହଞ୍ଚିଛନ୍ତି ସେମାନଙ୍କୁ ହାତଧରି କେହି ଚଳେଇ ଶିଖେଇ ନାହାନ୍ତି । ସେମାନେ ନିଜେ ଚାଲି ଶିଖିଛନ୍ତି । ସେସବୁ ମୂଳରେ ରହିଛି ତ୍ୟାଗ, ନିଷ୍ଠା, ସାଧନା, ଅଧ୍ୟବସାୟ, କର୍ତ୍ତବ୍ୟପରାୟଣତା, ସମୟାନୁବର୍ତ୍ତିତା, ନିୟମାନୁବର୍ତ୍ତିତା, ଜାତିପ୍ରୀତି, ଭାଷା ପ୍ରୀତି, ଐକ୍ୟ ଓ ସଂହତି । ତଥାପି ଆମ ହାତରେ ଢ଼େର ସମୟ ଅଛି । ଆମେ ନିଜକୁ ସଂଶୋଧନ କରି ନେଇ ପାରିବା । ଯଦି ଏହି ମୂଲ୍ୟବାନ ସମୟ ଟିକକ ଆମର ହାତଛଡ଼ା ହୋଇଯାଏ, ତାକୁ ଆଉ ଫେରି ପାଇବା ନାହିଁ । ଆମର ଆଉ କିଛି ନ ଥିବ । ବେଡ଼ି ଗୁଡ଼ କହୁଣୀକୁ ବହି ଯାଇଥିବ ।

ଆମେ କଣ୍ଠ ଫଟାଇ ଭାଷଣ ଦେଇପାରୁ । ଭାଷଣ ପ୍ରସଙ୍ଗରେ ବାହାସ୍ଫୋଟମାରି କହୁ, ଏଦେଶରେ ଯେତେ ଅନାଚାର, ଅତ୍ୟାଚାର, ବ୍ୟଭିଚାର ଓ ଯେତେ ଦୁର୍ନୀତି ଓ ଦୁର୍ନୀତି ସବୁ ଲୋପ କରିଦେବୁ । ଏକଥା କାଳ କାଳ ଧରି ଉଚ୍ଚାରଣ କରୁଥିଲେ ବି କୌଣସି ଜୋଟିକର ନିରାକରଣ ହୋଇପାରେ ନାହିଁ । କାରଣ ସେଥିପ୍ରତି ଆନ୍ତରିକତା ଥାଏ ଖୁବ୍ କମ୍ । ଆମର ନିର୍ଦ୍ଦିଷ୍ଟ

କିଛି ଗୋଟାଏ ନୀତି ବା ଆଦର୍ଶ ନଥାଏ । ଆମେ କେତେବେଳେ କଣ କରୁଥାଉ ଓ କହୁଥାଉ ଆମେ ବି ଜାଣୁନା । କିନ୍ତୁ ଭାଷଣରେ ଥାଏ କେତେ ଦର୍ଶନ; କେତେ ଦେଶପ୍ରେମ, କେତେ ମାନବିକତା. ଦୀନ ଦଳିତ ପ୍ରତି କେତେ ସହାନୁଭୂତି, କେତେ ଅଶ୍ରୁ ମୋଚନ । ମାତ୍ର ଫଳ କିଛି ହୁଏନା ।

ଆମେ ନିଜକୁ ମହାଧାର୍ମିକ ବୋଲି ପରିଚୟ ଦେଉ । ଚିତା ତିଳକ କାଟି ଗୈରିକ ବସ୍ତ୍ର ଧାରଣ କରି ହାତରେ ମାଳା ଗଡ଼ାଉ । ମାତ୍ର ଧର୍ମର ଧାର ଧାରୁନା । ଧର୍ମ ନାମରେ ଧର୍ମାନ୍ଧତା ସୃଷ୍ଟି କରୁ ।

ଆମର ବିଶ୍ୱାସୀ କେହି ନାହିଁ । ସମସ୍ତଙ୍କୁ ସନ୍ଦେହ ଚକ୍ଷୁରେ ଦେଖିବା ଆମର କାମ । ଜିହ୍ୱାଗ୍ରେ ଆମର ଅମୃତ । କିନ୍ତୁ ହୃଦୟରେ ହଳାହଳ, ତେଣୁ ଆମର କେହି ବନ୍ଧୁ ନାହାନ୍ତି । ଆମର ସମସ୍ତେ ଶତ୍ରୁ ।

ସବୁ ଦେଶ ତୁଳନାରେ ଆମେ ପଛୁଆ । କାରଣ ଆମେ ଭୀରୁ । ଯାହାକୁ କୁହାଯାଏ କାପୁରୁଷ । ଜୀବନ ସହିତ ମୁକାବିଲା କରିବାକୁ ଆମେ ସଂପୂର୍ଣ୍ଣ ଅସମର୍ଥ ।

ପଶୁ ପକ୍ଷୀଙ୍କଠାରୁ ଆରମ୍ଭ କରି ଛୋଟ ଛୋଟ କୀଟ ପତଙ୍ଗ ପର୍ଯ୍ୟନ୍ତ ସମସ୍ତଙ୍କର ସ୍ୱତନ୍ତ୍ର ଆଚରଣ ବିଧି ଅଛି । ସେମାନେ ସେ ସବୁକୁ ଅକ୍ଷରେ ଅକ୍ଷରେ ପାଳନ କରନ୍ତି । ଏଥିରେ ସେମାନଙ୍କର ତିଳେମାତ୍ର ବିଚ୍ୟୁତି ଘଟେନି । ଅଥଚ ଆମେ ମଣିଷ ହୋଇ ମଧ୍ୟ ଆମର ନିର୍ଦ୍ଦିଷ୍ଟ ଆଚରଣ ବିଧିନାହିଁ । ତାହାହିଁ ଆଶ୍ଚର୍ଯ୍ୟ । ତେଣୁ ଆମକୁ ମଣିଷ ନାମଧାରୀ ପଶୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମେ ସ୍ୱାଧୀନ ଦେଶର ନାଗରିକ । ଆମର ଆଚରଣ ବିଧି ଆଜିଠାରୁ ସଂଶୋଧନ ନକଲେ ଦେଶର ସ୍ୱାଧୀନତା ପୁଣିଥରେ ବିପନ୍ନ ହେବ । ପୁଣି ଥରେ ଆମେ ପରାଧୀନ ହୋଇଯିବା । ଆମେ କେହି ରହିବା ନାହିଁ । ସମସ୍ତେ କାଳକବଳରେ ପଡ଼ି ଗ୍ରସିଯିବା । ଆମ ପଛରେ ପଡ଼ି ରହିବ ଆମର କଳଙ୍କିତ ଇତିହାସ । ଆମର ଭବିଷ୍ୟତ ବଂଶଧର ଆମକୁ କ୍ଷମା ଦେବେ ନାହିଁ ।

ପ୍ରଧାନ ଶିକ୍ଷକ, ଗୋବରା ହା: ଇ: ସ୍କୁଲ
ପା: ପୋ:-ଗୋବରା, ଭାୟା:-ଡେରା
ଜି:- ଢେଙ୍କାନାଳ-୭୫୯୧୦୩



ଭବାନୀ ପାଟଣାରେ ଶିଶୁ ମେଳା

# ଆଦିବାସୀ ଯୁବ ଚାଷୀଙ୍କୁ ଶସ୍ୟ ସଂରକ୍ଷଣ ତାଲିମ୍

ଭାରତ ସରକାରଙ୍କ ଖାଦ୍ୟ ବିଭାଗ ଅଧୀନସ୍ଥ ଶସ୍ୟ ସଂରକ୍ଷଣ ଅଭିଯାନ, ଭୁବନେଶ୍ୱରଙ୍କ ତରଫରୁ ରାଜ୍ୟ କୃଷି ବିଭାଗ, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ବାରିପଦା ଓ ପଞ୍ଚାୟତ ସମିତି, କପ୍ତିପଦାଙ୍କ ସହାୟତାରେ କପ୍ତିପଦାଠାରେ ୫୦ ଜଣ ଶିକ୍ଷିତ ଆଦିବାସୀ ଚାଷୀଙ୍କୁ ନେଇ ଗୋଟିଏ ୨୧ ଦିନିଆ ଭ୍ରାମ୍ୟମାଣ ତାଲିମ ଶିବିର ଗତ ତା ୭-୮-୮୪ ରିଖରୁ ଆରମ୍ଭ ହୋଇଅଛି । ତାଲିମ ସମୟରେ ଶ୍ରେଣୀ ଶିକ୍ଷା ସହ ଘରେ ଏବଂ ବିଲରେ ମୂଷା ଦମନ, ଶସ୍ୟ ଭଣ୍ଡାରରୁ ପୋକ, ଆର୍ଦ୍ରତା, ଫିମ୍ପି ଓ ପକ୍ଷୀ ଦ୍ୱାରା ନଷ୍ଟର ଦୂରୀକରଣ, ଉନ୍ନତ ପକାକୋଠି ନିର୍ମାଣ ତଥା ଧାତବ ଡୋଲିର ବହୁଳ ପ୍ରଚାର ବିଷୟରେ ତାଲିମ ଦିଆଯାଉଛି । ଉପରୋକ୍ତ କାର୍ଯ୍ୟସବୁ କ୍ଷେତ୍ର ପ୍ରଦର୍ଶନୀ ଜରିଆରେ ପାଟପୁର, ଗାଡ଼ିଆପାଳ, ଟୁଇନପୋଷୀ, ଗେଣ୍ଡା-ପଡ଼ିଶା, କୁଆଗୁଣିଆ, ଗଉଣ୍ଡର୍ପା, କଳାଦହି, ନଛିପୁର, ଦୁର୍ଗାପୁର, ବୌଦ୍ଧମାନ ଓ ରାଘୁବସା ଗ୍ରାମରୁ ତାଲିମ ପାଇଁ ବଛା ଯାଇଥିବା ଶିବିରାର୍ଥୀମାନଙ୍କ ଜରିଆରେ କ୍ଷେତ୍ରପ୍ରଦର୍ଶନୀ ଦ୍ୱାରା କାର୍ଯ୍ୟ କରାଯିବ । ଶସ୍ୟ ସଂରକ୍ଷଣ ଅଭିଯାନ ଭୁବନେଶ୍ୱର, ତରଫରୁ ସମସ୍ତପ୍ରକାର ରାସାୟନିକ ଦ୍ରବ୍ୟ ମାଗଣାରେ ଯୋଗାଇ ଦିଆଯିବ । ମୂଷା ନିୟନ୍ତ୍ରଣ ପାଇଁ ବ୍ୟବହୃତ ହେଉଥିବା ଖାଦ୍ୟଥୋପ ଉପକୃତ ହେଉଥିବା ଚାଷୀମାନଙ୍କ ତରଫରୁ ଯୋଗାଇ ଦିଆଯିବ । ଏତଦ୍‌ବ୍ୟତୀତ ଶିବିରାର୍ଥୀ-ମାନଙ୍କୁ ଆଧୁନିକ କୃଷି ଯନ୍ତ୍ରପାତିର ବ୍ୟବହାର, ଫଳ ଓ ପନିପରିବା ସଂରକ୍ଷଣ, ଫରିବାତ ନିୟନ୍ତ୍ରଣ, ଆଦିବାସୀ ଉନ୍ନୟନ ଯୋଜନା ସମ୍ବନ୍ଧରେ ତାଲିମ ଦିଆଯିବ । କୃତକାର୍ଯ୍ୟ ସମସ୍ତ ଶିବିରାର୍ଥୀମାନଙ୍କୁ ପ୍ରତ୍ୟେକ ଏକଶତ ଟଙ୍କା ଭରା ଆକାରରେ ଦିଆଯିବ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭାରତ ସରକାର ରାଜ୍ୟ ସରକାରଙ୍କୁ ରାଜ୍ୟର ଚାଷୀମାନଙ୍କୁ ସୁବିଧାରେ ଧାତବ ଡୋଲି ଯୋଗାଇ ଦେବା ପାଇଁ ଦଶ ଲକ୍ଷ ଟଙ୍କା ସୁଧ ବିହୀନ ଋଣ ଦେଇଥିଲେ । ରାଜ୍ୟ ସରକାରଙ୍କ ତରଫରୁ ଓଡ଼ିଶା ଆଗ୍ରୋ ଇଣ୍ଡଷ୍ଟ୍ରିଜ କରପୋରେସନ୍ ସେମାନଙ୍କର ଜିଲ୍ଲାରେ ଥିବା ନିର୍ମାଣ କେନ୍ଦ୍ରମାନଙ୍କରେ ବିଭିନ୍ନ ଆକାରର ଧାତବ ଡୋଲି ତିଆରି କରି ରାଜ୍ୟର ଚାଷୀମାନଙ୍କୁ ଯୋଗାଇ ଦେଉଅଛନ୍ତି । ରାଜ୍ୟର ବିଭିନ୍ନ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ତରଫରୁ କ୍ଷୁଦ୍ର, ନାମମାତ୍ର ଏବଂ ଆଦିବାସୀ ଚାଷୀମାନଙ୍କୁ ଶତକଡ଼ା ୨୫,୩୩.୩ ଏବଂ ୫୦ ଭାଗ ଧାତବ ଡୋଲି ଉପରେ ରିହାତି ଦେଉଛନ୍ତି । ଉକ୍ତ ତାଲିମ ଶିବିରର ଶିବିରାର୍ଥୀମାନେ ସେମାନଙ୍କ ଭରାବାବଦ ଏକଶତ ଟଙ୍କା ବଦଳରେ ପ୍ରତ୍ୟେକ ଗୋଟିଏ ଗୋଟିଏ ଧାତବ ଡୋଲି ନେବା ପାଇଁ ଆଗ୍ରହ ପ୍ରକାଶ କରିଅଛନ୍ତି । ରାଜ୍ୟର ଚାଷୀମାନଙ୍କ ପାଖରେ ଥିବା ଶସ୍ୟାଧାରର ବହୁଳ ଭାବରେ ଉନ୍ନତିକରଣ କରିବା ପାଇଁ ୟୁରୋପୀୟ ମିଳିତ ଆର୍ଥିକ ସଂସ୍ଥା (ଇ. ଇ. ସି.) ତରଫରୁ ଭାରତ ସରକାରଙ୍କ ଜରିଆରେ ରାଜ୍ୟ ସରକାରଙ୍କୁ ୪.୨୨ ଲକ୍ଷ ଟଙ୍କା ଅନୁଦାନ ଦିଆଯାଇଥିଲା । ଏହାଦ୍ୱାରା ଚାଷୀମାନଙ୍କୁ ପକ୍‌କାକୋଠି ନିର୍ମାଣ ପାଇଁ ବ୍ୟବହୃତ ହେଉଥିବା ପ୍ରବେଶ ଏବଂ ନିଷ୍କାସନ ଦ୍ୱାର, ପଲିଥିନ ଚଦର, ଆର୍ଦ୍ରତାଜନିତ କ୍ଷତିରୁ ଶସ୍ୟ ରକ୍ଷାପାଇଁ କାଠରାଡ଼ି ତଥା ପଲିଥିନ୍ ଚଦର, ଶସ୍ୟ ସଂରକ୍ଷଣ ଅଭିଯାନ ତରଫରୁ ବଛାଯାଇଥିବା ଆଦର୍ଶ ଗ୍ରାମ ପୁଞ୍ଜଗୁଡ଼ିକରେ ମାଗଣାରେ ଯୋଗାଇ ଦିଆଯାଇଥିଲା । ରାଜ୍ୟର ଚାଷୀମାନଙ୍କୁ ସୁବିଧାରେ ଶସ୍ୟ ସାଇତି ରଖିବା ପାଇଁ ବ୍ୟବହୃତ ସମସ୍ତ ପ୍ରକାରର ରାସାୟନିକ ଦ୍ରବ୍ୟ କେନ୍ଦ୍ର ସରକାରଙ୍କ ତରଫରୁ ରାଜ୍ୟ ସରକାରଙ୍କୁ ସାତ ଲକ୍ଷ ଟଙ୍କାର ଅନୁଦାନ ଦିଆଯାଇଅଛି ।

ଉକ୍ତ ତାଲିମ ଶିବିରର ଉଦ୍‌ଘାଟନ ଉତ୍ସବରେ ମୟୂରଭଞ୍ଜ ଜିଲ୍ଲାର କୃଷି ଉପନିର୍ଦ୍ଦେଶକ ଶ୍ରୀ ଏସ. ଏନ. ଦ୍ୱାରୀ ତାଙ୍କର ଉଦ୍‌ଘାଟନ ଭାଷଣରେ ଆଧୁନିକ କୃଷି ଟେକ୍‌ନିକ୍ ପ୍ରୟୋଗ କରି ଅଧିକ ଉତ୍ପାଦନ ଏବଂ ସଂରକ୍ଷଣ କରିବା ପାଇଁ ତାଲିମ ସକାଶେ ଆସିଥିବା ଚାଷୀ ଏବଂ ଅନ୍ୟାନ୍ୟ ଉପସ୍ଥିତ ଚାଷୀଙ୍କୁ ଆହ୍ୱାନ ଦେଇଥିଲେ । ପଞ୍ଚାୟତ ସମିତି ଚେୟାରମ୍ୟାନ ଶ୍ରୀ ଏ. ବେହେରା ଶସ୍ୟ ସଂରକ୍ଷଣ ପାଇଁ ଦିଆଯାଉଥିବା ତାଲିମର ସଦୁପଯୋଗ ପାଇଁ ପରାମର୍ଶ ଦେଇଥିଲେ । ମୟୂରଭଞ୍ଜର ପି. ପି. ଓ. ଶ୍ରୀ ସୁରେଶ ପଟ୍ଟନାୟକ ସାଇତା ଶସ୍ୟର ଶତ୍ରୁମାନଙ୍କ ସମ୍ବନ୍ଧରେ ସମ୍ୟକ ଆଲୋକପାତ କରିଥିଲେ । ପ୍ରାରମ୍ଭରେ ଶସ୍ୟ ସଂରକ୍ଷଣ ଅଭିଯାନ, ଭୁବନେଶ୍ୱର ଶାଖାର ସହ ନିର୍ଦ୍ଦେଶକ ଶ୍ରୀ ବସନ୍ତ କୁମାର ରାଉତ ଉକ୍ତ ସଂସ୍ଥାର କାର୍ଯ୍ୟକ୍ରମ ବିଷୟରେ ସୂଚନା ଦେଇଥିଲେ । ତାଙ୍କର ସଭାପତି ଭାଷଣରେ ଶ୍ରୀ ଏଲ. ଏନ. ନାୟକ, ବି. ଡ଼ି. ଓ. କପ୍ତିପଦା, ସାଇତା ଶସ୍ୟ ସହ ବିହନ ସଂରକ୍ଷଣ ପାଇଁ ଉପାୟର ସଦୁପଯୋଗ ପରାମର୍ଶ ଦେଇଥିଲେ । ପରିଶେଷରେ କୃଷି ସଂପ୍ରସାରଣ ଅଧିକାରୀ ଶ୍ରୀ ଡ଼ି. ସି. ଦାଶ ଧନ୍ୟବାଦ ଦେଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ଏସ. ଆର. ଖାନ୍, ଏ. ଡ଼ି. ଏ. ଓ. ଏବଂ କପ୍ତିପଦାର ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ ।

# ସପ୍ତମ ଯୋଜନାରେ ଆଦିବାସୀ ଶିକ୍ଷା

ଡକ୍ଟର ସୁଭାଷଚନ୍ଦ୍ର ପଣ୍ଡା

ସରକାରୀ ହିସାବ ଅନୁସାରେ ଦେଶରେ ବର୍ତ୍ତମାନ ପ୍ରାୟ ୬–୧୧ ବର୍ଷ ବୟସର ପାଞ୍ଚ କୋଟି ପିଲା ନିରକ୍ଷର ରହିଛନ୍ତି । ଏଥିରୁ ପ୍ରାୟ ୨୩ ନିୟୁତ ହେଉଛନ୍ତି ବାଳକ ଓ ପ୍ରାୟ ୨୭ ନିୟୁତ ହେଉଛନ୍ତି ବାଳିକା । ଆମ ସମ୍ବିଧାନର ପ୍ରଧାନ ନିର୍ଦ୍ଦେଶ ମଧ୍ୟରେ ଦେଶରେ ସମ୍ବିଧାନ ପ୍ରବର୍ତ୍ତିତ ହେବାର ଦଶ ବର୍ଷ ମଧ୍ୟରେ ଦେଶର ସମସ୍ତ ପିଲାଙ୍କୁ ମାଗଣାରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ଦେବାର ବ୍ୟବସ୍ଥା କରାଯିବ ବୋଲି କୁହାଯାଇଥିଲା । କିନ୍ତୁ ସେହି ସମୟ ସୀମା ଅତୀତ ହେବାର ପଚିଶବର୍ଷ ପରେ ମଧ୍ୟ ଏହା ପୂରଣ ହୋଇ ପାରି ନାହିଁ । ଏବେ ଷଷ୍ଠ ପଞ୍ଚବାର୍ଷିକ ଯୋଜନାର ମଧ୍ୟବର୍ତ୍ତୀକାଳୀନ ସମୀକ୍ଷା ପରେ ଏହା ୧୯୯୦ ମସିହା ପୂର୍ବରୁ ପୂରଣ ହୋଇ ପାରିବ କି ନାହିଁ ସନ୍ଦେହ ପ୍ରକାଶ ପାଉଛି ।

୧୯୮୧ ଜନଗଣନା ଅନୁଯାୟୀ ଆସାମ ବ୍ୟତୀତ ଦେଶର ଅନ୍ୟତ୍ର ନିରକ୍ଷରଙ୍କ ସଂଖ୍ୟା ମୋଟ ଲୋକ ସଂଖ୍ୟାର ଶତକଡ଼ା ୬୩.୭୭ । ବର୍ତ୍ତମାନ ଦେଶର ମୋଟ ଜନସଂଖ୍ୟା (ଆସାମ ବ୍ୟତୀତ) ୬୬ କୋଟି ୫୨ ଲକ୍ଷ ୮୦ ହଜାର ଓ ତାଙ୍କ ମଧ୍ୟରୁ ନିରକ୍ଷରଙ୍କ ସଂଖ୍ୟା ୪୨ କୋଟି ୪୨ ଲକ୍ଷ ୫୦ ହଜାର । ରାଜସ୍ଥାନରେ ନିରକ୍ଷର ସଂଖ୍ୟା ସର୍ବାଧିକ । ସେଠାରେ ମୋଟ ଲୋକସଂଖ୍ୟାର ଶତକଡ଼ା ୭୫.୬୨ ନିରକ୍ଷର । ଓଡ଼ିଶାରେ ମଧ୍ୟ ନିରକ୍ଷର ସଂଖ୍ୟା କମ୍ ନୁହେଁ । ଓଡ଼ିଶାରେ ମୋଟ ଲୋକସଂଖ୍ୟାର ଶତକଡ଼ା ୬୫.୭୭ ନିରକ୍ଷ... ଓଡ଼ିଶାର ଆଦିବାସୀମାନଙ୍କ ମଧ୍ୟରେ ଶତକଡ଼ା ୮... ନିରକ୍ଷର । କୋରାପୁଟ ଜିଲ୍ଲାରେ ଆଦିବାସୀମ... ମଧ୍ୟରେ ନିରକ୍ଷରତା ସର୍ବାଧିକ (୯୩.୬୯) ଓ ସୁନ୍ଦ... ଜିଲ୍ଲାରେ ସର୍ବନିମ୍ନ (୭୭.୩୦) ।

ଯୋଜନା କମିଶନଙ୍କ ପରିକଳ୍ପନା ଅନୁଯାୟୀ ଯେତେ ଅ... ପିଲାଙ୍କୁ ପ୍ରାଥମିକ ଶିକ୍ଷା ଦେବାର ଯୋଜନା କରାଯା... ସେଥିମଧ୍ୟରୁ ଶତକଡ଼ା ୭୦ ଭାଗ ଶିକ୍ଷା ଦୃଷ୍ଟିରୁ ପଛ... ପଡ଼ିଥିବା ରାଜ୍ୟମାନଙ୍କରେ କରାଯିବ । ଏହାଦ୍ୱା... ୧୯୮୪-୮୫ ମସିହା ଶେଷ ସୁଦ୍ଧା ଦେଶର ୬ରୁ ୧୧ ବ... ବୟସର ସମସ୍ତ ବାଳକ ଓ ଶତକଡ଼ା ୮୮ ଭାଗ ବାଳି... ପ୍ରାଥମିକ ଶିକ୍ଷା ପାଇ ପାରିବେ । ବିଦ୍ୟାଳୟର ଶିକ୍ଷା ପଦ୍ଧ... ଯେଭଳି ଗ୍ରାମାଞ୍ଚଳ ଦରିଦ୍ର ପରିବାରଙ୍କ ଚଳଣୀ ସହିତ ତାଳର... କରାଯିବ, ସେଥିପ୍ରତି ଅଧିକ ଦୃଷ୍ଟି ଦେବା ଦରକାର ବୋ... ଯୋଜନା କମିଶନ ଅନୁଭବ କରୁଛନ୍ତି । ବିଦ୍ୟାଳୟ ପା... ଗୃହ ଓ ଶିକ୍ଷା ଉପକରଣ ଏବଂ ଦୁର୍ବଳ ଶ୍ରେଣୀର ପରିବାର... ପିଲାଙ୍କୁ ପୁସ୍ତକ, ଖାଦ୍ୟ ଇତ୍ୟାଦି ମାଗଣାରେ ଯୋଗାଇ ଦେବା... ବ୍ୟବସ୍ଥା କରାଯିବା ଲାଗି ଅର୍ଥର ବ୍ୟବସ୍ଥା ମଧ୍ୟ କରାଯାଇଛି ।

କିନ୍ତୁ ଏସବୁ ସତ୍ତ୍ୱେ ଲକ୍ଷ୍ୟ ପୂରଣ ହେବାରେ ସନ୍ଦେହ... ପ୍ରଥମରୁ ଦେଖା ଯାଉଛି ବୋଲି ବହୁ ଶିକ୍ଷାବିତ୍, ରାଜନୀତିଜ୍ଞ... ମତବ୍ୟକ୍ତ କରୁଛନ୍ତି ।

ବର୍ତ୍ତମାନ ଓଡ଼ିଶାର ଆଦିବାସୀ ଲୋକଙ୍କ ସଂଖ୍ୟା ଓ ସାଧାରଣ ଲୋକଙ୍କ ସଂଖ୍ୟାର ତୁଳନାତ୍ମକ ପରିସଂଖ୍ୟାନରୁ ଜଣାପଡ଼େ ଯେ, ୧୯୬୧ରେ ଆଦିବାସୀ ଲୋକଙ୍କ ସଂଖ୍ୟା ରାଜ୍ୟର ସମଗ୍ର ଲୋକ ସଂଖ୍ୟାର ଶତକଡ଼ା ୨୪.୦୭ ଭାଗ ଥିଲା । ୧୯୭୧ରେ ଶତକଡ଼ା ୨୩.୧୧ ଭାଗ ହୋଇଥିଲା ଏବଂ ୧୯୮୧ରେ ଶତକଡ଼ା ୨୨.୪୩ ଭାଗ ହୋଇଛି । ଏହାର କାରଣ ଦୃଷ୍ଟିରୁ ଆର୍ଥିକ ଅବସ୍ଥା, ସ୍ୱାସ୍ଥ୍ୟ ଖାଦ୍ୟାଭାବ ଏମାନଙ୍କ ସ୍ୱାଭାବିକ ଜୀବନ ଯାପନରେ ବିରାଟ ପ୍ରତିବନ୍ଧକ ବୋଲି ମନେ କରାଯାଉଥିଲା । ୧୯୬୧ରୁ ୧୯୭୧ ମଧ୍ୟରେ ପରିବାର ନିୟନ୍ତ୍ରଣ ଯୋଜନା ସେତେ କ୍ରିୟାଶୀଳ ନ ଥିଲା ଓ ୧୯୭୧ରୁ ୧୯୮୧ ମଧ୍ୟରେ ଏହା କ୍ରିୟାଶୀଳ ଥିଲେ ମଧ୍ୟ କେବଳ ଆଦିବାସୀଙ୍କ ମଧ୍ୟରେ ସୀମାବଦ୍ଧ ନ ଥିଲା ।

ଏହା ସର୍ବସମ୍ମତ ମତ ଯେ ଶିକ୍ଷାହିଁ ଉନ୍ନତିର ମୂଳଦୁଆ । ବର୍ତ୍ତମାନ ସପ୍ତମ ଯୋଜନାର ସଫଳ ରୂପାୟନ ପାଇଁ ବହୁ ବିଷୟର ଆଲୋଚନା ଚାଲିଛି । ସରକାରଙ୍କ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଏ ବିଷୟରେ ସମାଜର ବିଭିନ୍ନ ସ୍ତରରୁ ବିଭିନ୍ନ ଶ୍ରେଣୀ ଲୋକଙ୍କଠାରୁ ସେମାନଙ୍କର ମତାମତ ସଂଗ୍ରହ କରି ହରିଜନ ଓ ଆଦିବାସୀମାନଙ୍କର ମଙ୍ଗଳ ନିମନ୍ତେ ବିଭିନ୍ନ ଦିଗରୁ ବିଚାର କରି ସତର୍କ ପଦକ୍ଷେପ ନେବାକୁ ଚେଷ୍ଟା କରୁଛନ୍ତି, ଯେପରିକି ସେମାନଙ୍କର ଉନ୍ନତି ପାଇଁ ଯେଉଁ ପ୍ରଚେଷ୍ଟା ଚାଲିଛି ସେଥିର ସୁଫଳରୁ ଏହି ଦରିଦ୍ର ଓ ଅବହେଳିତ ସମାଜ ବଞ୍ଚିତ ନ ହୁଏ ।

"ଅଳଙ୍କରଣ" ପ୍ରଗଲ୍ଭ ମହାନ୍ତି (୯) ଚତୁର୍ଥ ଶ୍ରେଣୀ





"ବାହୁଡ଼ା" ରୋଜାଲିନ୍ ବେହେରା (୧୩) ସପ୍ତମ ଶ୍ରେଣୀ




ଲର୍ଡ଼ ମାଉଣ୍ଟବାଟେନ୍ ଫିଲିମ୍ ନିର୍ମାତା ମାନଙ୍କ ସହିତ ଶ୍ରୀମତୀ ଗାନ୍ଧୀ .




ରାଜେନ୍ଦ୍ର
ଜନ୍ମ ଶତାବ୍ଦୀ
ପ୍ରଦର୍ଶନୀ



"ଜନ୍ମଦିନେ"

ମଧୁସ୍ମିତା ମହାନ୍ତି

(୧୦) ଷଷ୍ଠଶ୍ରେଣୀ

"ଆଳାପ"

ଶୁଚିସ୍ମିତା ତ୍ରିପାଠୀ

(୧୨) ଅଷ୍ଟମଶ୍ରେଣୀ





"ନୌ ବିହାର

ଶିଳ୍ପୀ ମିଶ୍ର (୧



ଜଗତପୁର ଶିଳ୍ପାଞ୍ଚଳ ଉଦ୍‌ଘାଟନ ।



ବାଣୀବିହାର ରେ ଗାନ୍ଧୀବାଦ ଆଲୋଚନାଚକ୍ର



ସାହିତ୍ୟ ଏକାଡେମୀ ପ୍ରକାଶନ : ରାଜ୍ୟପାଳଙ୍କ ଉପହାର ।

ଓଡ଼ିଶାରେ ଆଦିବାସୀମାନଙ୍କର ଶିକ୍ଷା ପାଇଁ ଯେ କେବଳ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଦାୟୀ ତା ନୁହେଁ । ଆଦିବାସୀମାନେ ଓଡ଼ିଶାର କେବଳ ଗୋଟିଏ ସ୍ୱତନ୍ତ୍ର ସ୍ଥାନରେ ବସବାସ କରି ରହନ୍ତି ନାହିଁ । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଆଦିବାସୀ ଅନ୍ୟମାନଙ୍କ ସହ ବସବାସ କରନ୍ତି । ଏମାନଙ୍କର ଶିକ୍ଷା ପାଇଁ ଶିକ୍ଷା ଓ ଯୁବ କଲ୍ୟାଣ ବିଭାଗ ମଧ୍ୟ ବହୁ ପରିମାଣରେ ଦାୟୀ । ଆଦିବାସୀମାନଙ୍କ ମଧ୍ୟରେ ମଧ୍ୟ ୬୨ ପ୍ରକାରର ସଂପ୍ରଦାୟ ଅଛନ୍ତି । କେବଳ କେତେକ ନିର୍ଦ୍ଦିଷ୍ଟ ସଂପ୍ରଦାୟକୁ (ବଣ୍ଡା, କୁଟିଆକନ୍ଧ, ଡଙ୍ଗରିଆକନ୍ଧ, ଜୁଆଙ୍ଗ ଇତ୍ୟାଦି) ଛାଡ଼ିଦେଲେ ଅନ୍ୟମାନେ ସଂପ୍ରଦାୟ ପାଖାପାଖି ଓ କେତେକ କ୍ଷେତ୍ରରେ ଅନ୍ୟ ଅଣ-ଆଦିବାସୀ ସଂପ୍ରଦାୟ ସହ ମିଶି ବସବାସ କରୁଛନ୍ତି । ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଆଦିବାସୀ-ବହୁଳ ଅଞ୍ଚଳମାନଙ୍କରେ ସେବାଶ୍ରମ, ଆବାସିକ ସେବାଶ୍ରମ, ଆଶ୍ରମ ଓ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟମାନ ସ୍ଥାପନ କରିଛନ୍ତି । ଏତଦ୍‌ବ୍ୟତୀତ ଅନ୍ୟ କେତେକ ସ୍ଥାନୀୟ ଉଦ୍ୟୋଗ ଦ୍ୱାରା ଏବଂ ସରକାରଙ୍କ ଶିକ୍ଷା ବିଭାଗଦ୍ୱାରା ମଧ୍ୟ ବହୁ ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ଖୋଲାଯାଇଛି । ପ୍ରତ୍ୟେକ କ୍ଷେତ୍ରରେ ଆଦିବାସୀ ସଂପ୍ରଦାୟ ଅନ୍ୟ ଅଣଆଦିବାସୀ ସଂପ୍ରଦାୟ ସହ ମିଶି ଶିକ୍ଷା ପାଉଛନ୍ତି । ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ତରଫରୁ ତାଙ୍କର ବିଭାଗୀୟ ବିଦ୍ୟାଳୟ ବ୍ୟତୀତ ଅନ୍ୟାନ୍ୟ ବିଦ୍ୟାଳୟମାନଙ୍କରେ ମଧ୍ୟ ହଷ୍ଟେଲ ବ୍ୟବସ୍ଥା କରିଛନ୍ତି ।

ତେଣୁ ଆଦିବାସୀ ଶିକ୍ଷା ସମସ୍ୟା କହିଲେ କେବଳ ଯେ ସେହି ବିଭାଗୀୟ ବିଦ୍ୟାଳୟ ସମସ୍ୟା ତାହା ନୁହେ । ଆଦିବାସୀ ଅଞ୍ଚଳର ସମସ୍ତ ବିଦ୍ୟାଳୟମାନଙ୍କ ସମସ୍ୟା ଦୃଷ୍ଟି ଗୋଚର ହୁଏ । ସେମାନଙ୍କର ଶିକ୍ଷା ସମସ୍ୟା ଅନୁଧ୍ୟାନ କଲାପରେ ଯେଉଁ କେତେକ ଆଲୋଚନା, ସମାଲୋଚନା ଓ ସେଗୁଡ଼ିକର ଦୂରୀକରଣର ଉପାୟ ସମ୍ଭାବ୍ୟ ଯୋଜନାକୁ ଆଖି-ଆଗରେ ରଖି ଏଠାରେ ସନ୍ନିବେଶିତ ହୋଇଛି ।

'Each one teach one' ଏହି ସ୍ଲୋଗାନ ସହିତ ଆମେ ସମସ୍ତେ ଅଳ୍ପବହୁତ ପରିଚିତ । ଶିକ୍ଷା ବ୍ୟତୀତ ଆମର ବା ଅନ୍ୟ ଯାହାର ହେଉନା କାହିଁକି ଏହି ସଭ୍ୟ ଜଗତରେ ଷ୍ଟାନ୍ଦାର୍ଡ ଆସନ ଲାଭ ସମ୍ଭବ ନୁହେଁ । ପ୍ରତ୍ୟେକ ଭାରତୀୟ ନାଗରିକ ନିଜର ପାଳକରିଲା, ଜାତି କୁଟୁମ୍ବଙ୍କର ଶିକ୍ଷାପାଇଁ ବିଶେଷ ଯତ୍ନବାନ । ସେହିପରି ଆମର ଜାତୀୟ ସରକାର ଓ ଆମର ପ୍ରତ୍ୟେକଙ୍କର ଏହା କର୍ତ୍ତବ୍ୟ ହେବା ଉଚିତ, ଯେପରି ଏହି ଦରିଦ୍ର ଅବହେଳିତ ସଂପ୍ରଦାୟଙ୍କ ମଧ୍ୟରୁ ବହୁ ସଂଖ୍ୟକ ଶିକ୍ଷିତ ବାହାରିବେ । କାରଣ ଘରେ ଜଣେ ଶିକ୍ଷିତ ହେଲେ ସେ କେବେ-ହେଲେ ଭୁଲିବ ନାହିଁ ଯେ ତାର ପିଲାମାନେ ଅଶିକ୍ଷିତ ହୋଇ ରହିଥାନ୍ତୁ । ତାର ଅବସ୍ଥାର ଉନ୍ନତି କରିବାକୁ ହେଲେ ଶିକ୍ଷା ନିହାତି ଆବଶ୍ୟକ ବୋଲି ଜାଣିବ । ଆଦିବାସୀମାନଙ୍କ ମଧ୍ୟରେ ଶିକ୍ଷିତହାର ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ କମ୍ । ସବୁଠାରୁ ବେଶୀ ସୁନ୍ଦରଗଡ଼ ଜିଲ୍ଲାରେ (୨୨.୬୦) ଓ ସବୁଠାରୁ କମ୍ କୋରାପୁଟ ଜିଲ୍ଲାରେ (୬.୩୧) । ସୁନ୍ଦରଗଡ଼ ଜିଲ୍ଲାର ଏହି ଶିକ୍ଷିତ ହାର ପାଇଁ ଖ୍ରୀଷ୍ଟିୟାନ ମିଶନାରୀ ବିଶେଷ ପରିମାଣରେ ଦାୟୀ ।

ଅଶିକ୍ଷିତ ଆଦିବାସୀ ସଂପ୍ରଦାୟର ହୃଦବୋଧ ହେବା ଉଚିତ୍ ଯେ ଅନ୍ୟମାନଙ୍କପରି ସେମାନେ ଯଦି ଶିକ୍ଷିତ ହୁଅନ୍ତି ତେବେ ସେମାନଙ୍କର ସାମାଜିକ ସ୍ଥିତି ବରଂ ବେଶୀ ସୁରକ୍ଷିତ ହେବ । ଅଶିକ୍ଷିତ ଥିବା ଯୋଗୁଁ ସେମାନେ ସେମାନଙ୍କର ସାମାଜିକ ସ୍ଥିତି ବିଷୟରେ ଆଦୌ ସଚେତନ ହୋଇପାରୁ ନାହାନ୍ତି । ତାଙ୍କର ସାମାଜିକ ସ୍ଥିତିର ଉନ୍ନତି ହେବ କେବଳ ସେମାନେ ଯଦି ଶିକ୍ଷିତ ହୋଇପାରନ୍ତି ।

ସେମାନଙ୍କ ମଧ୍ୟରେ 'Labour and life' ଧାରଣା ଉତ୍ତମରୂପେ ସୃଷ୍ଟି କରିବାକୁ ହେବ । ଦିନସାରା କଠିନ ପରିଶ୍ରମକରି ତଦ୍ ଉପାର୍ଜିତ ଧନଦ୍ୱାରା ସେମାନେ କଷ୍ଟେମଷ୍ଟେ ଜୀବିକା ନିର୍ବାହ କରନ୍ତି । ସେମାନଙ୍କର ପିଲାମାନେ ବାଲ୍ୟକାଳରୁ କଠିନ ପରିଶ୍ରମକରି ବିଦ୍ୟା ଅର୍ଜନ କରିଥିଲେ, ଜୀବନର ପଶ୍ଚାତ୍ ଭାଗରେ ଉତ୍ତମରୂପେ ସଭ୍ୟ ମନୁଷ୍ୟଭଳି ଜୀବିକା ନିର୍ବାହ କରି ପାରିବେ । ତେଣୁ ପିଲାମାନଙ୍କର କଠିନ ପରିଶ୍ରମ ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତପାଇଁ ସହାୟକ । ଏହି ଧାରଣା ଆଦିବାସୀ ପିତାମାତାଙ୍କ ମନରେ ଜାଗ୍ରତ କରିବାକୁ ହେବ ।

କେବଳ ଯେ ବିଦ୍ୟାଳୟ ଖୋଲିଦେଲେ ଏସବୁର ସମାଧାନ ହୋଇଯିବ ତାହା ନୁହେଁ । ଅଭିଭାବକମାନଙ୍କୁ ଶିକ୍ଷିତ କରିବା ପ୍ରଥମ କର୍ତ୍ତବ୍ୟ । ଅବଶ୍ୟ ଏଥିପାଇଁ ସରକାରଙ୍କ ତରଫରୁ 'ପ୍ରୌଢ଼ଶିକ୍ଷା'ର ବ୍ୟବସ୍ଥା କରାଯାଇଛି । କିନ୍ତୁ 'ପ୍ରୌଢ଼ଶିକ୍ଷା'ର ବର୍ତ୍ତମାନ ଅବସ୍ଥା ଯାହା ତାହା ସର୍ବଜନ ବିଦିତ । ସେ ବିଷୟରେ ବିଶେଷ ଆଲୋଚନା ଅନାବଶ୍ୟକ । ଶିକ୍ଷା ଓ ଗଣ ସହଯୋଗ ଅଭାବରୁ ତାହା ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରୁନାହିଁ । ସେହିପରି ଯେଉଁ ଆଦିବାସୀ ବାଳିକା ବାଳକ ବିଦ୍ୟାଳୟରେ ପଢ଼ନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ପିତାମାତା ଅଶିକ୍ଷିତ । ତେଣୁ ପିତାମାତାଙ୍କର ଶିକ୍ଷାର ଆବଶ୍ୟକତା ନିହାତି ଜରୁରୀ । ସେମାନଙ୍କ ମଧ୍ୟରେ ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି ସକାଶେ ଆଦିବାସୀ ଗ୍ରାମମାନଙ୍କରେ ବାହାର ଦୁନିଆ ଓ ସମାଜର ଗତିବିଧି ଶିକ୍ଷାର ଉପଯୋଗୀତା ସଂପର୍କୀୟ ସେମିନାର ଓ documentary film ଇତ୍ୟାଦି ପ୍ରଦର୍ଶନ ହେବା ଉଚିତ୍ ।

ସରକାର ଆଦିବାସୀଙ୍କ ଉନ୍ନତି ସକାଶେ ଯେଉଁ ସୁବିଧାମାନ ଯୋଗାଉଛନ୍ତି, ସେ ବିଷୟରେ ପ୍ରତ୍ୟେକ ଆଦିବାସୀ ପରିବାରକୁ ଅବଗତ କରାଇବା ଆମର ପ୍ରଥମ କର୍ତ୍ତବ୍ୟ । ବହୁସ୍ଥାନରେ ସେମାନେ ଏସବୁ ସୁବିଧା ସଂପର୍କରେ ପୁରାପୁରି ଅନଭିଜ୍ଞ । ତେଣୁ ସରକାରଙ୍କର ପ୍ରତ୍ୟେକ ବିଭାଗ (ଯେଉଁ ବିଭାଗ ଯେଉଁ କାର୍ଯ୍ୟପାଇଁ ଦାୟୀ) ଏ ଦିଗରେ ସତର୍କ ଦୃଷ୍ଟି ଦେବା ଉଚିତ୍ ।

ଏବେ ଜାତୀୟ ଶିକ୍ଷା, ଗବେଷଣା ଓ ତାଲିମ ପରିଷଦ ପକ୍ଷରୁ କରାଯାଇଥିବା ତୃତୀୟ ନିଖିଳ ଭାରତ ଶିକ୍ଷା ସମୀକ୍ଷାରୁ ପ୍ରକାଶ ପାଇଛି ଯେ, ବହୁ ଜରୁରୀ କାର୍ଯ୍ୟକ୍ରମ ପ୍ରବର୍ତ୍ତିତ ହେବା ସତ୍ତ୍ୱେ ଦେଶରେ ୨୮ ହଜାରରୁ ଅଧିକ ବିଦ୍ୟାଳୟର ଗୃହ ନାହିଁ କିମ୍ବା ଏହାର ମାମୁଲି ସୁବିଧା ମଧ୍ୟ ନାହିଁ । ଆମ ରାଜ୍ୟରେ ୩୭ ହଜାର ପ୍ରାଥମିକ ବିଦ୍ୟାଳୟ ମଧ୍ୟରୁ ୮ ହଜାର ବିଦ୍ୟାଳୟର ଘର ନାହିଁ ବୋଲି ଦୂରଦର୍ଶନ ଦ୍ୱାରା ପ୍ରକାଶ ପାଇଥିଲା । ବହୁ ବିଦ୍ୟାଳୟ ଗୃହ ମରାମତି ଅଭାବରୁ ଶୋଚନୀୟ ଅବସ୍ଥା ।

ତେଣୁ ଆଉ ଅଧିକ ବିଦ୍ୟାଳୟ ନ ଖୋଲି ବରଂ ଯେତିକି ଅଛି ସେଗୁଡ଼ିକର ପୂର୍ଣ୍ଣ ବ୍ୟବସ୍ଥା ସର୍ବାଗ୍ରେ ଆବଶ୍ୟକ ।

କେନ୍ଦ୍ର ମନ୍ତ୍ରଣାଳୟର ହିସାବରୁ ଦେଖାଯାଏ ଯେ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ନାମ ଲେଖାଇଥିବା ପିଲାଙ୍କ ମଧ୍ୟରୁ ଶତକଡ଼ା ୬୩ଭାଗ ଶିକ୍ଷା ସମାପ୍ତ ହେବା ପୂର୍ବରୁ ବିଦ୍ୟାଳୟ ଛାଡ଼ି ଚାଲି ଯାଉଛନ୍ତି ଏବଂ ଏହାର କାରଣ ସ୍ୱରୂପ କେବଳ ପୁସ୍ତକ ଭିତ୍ତିକ ପାଠ୍ୟକ୍ରମ ପ୍ରବର୍ତ୍ତନ ବୋଲି ଦର୍ଶାଯାଇଛି । ତେଣୁ ବର୍ତ୍ତମାନ ଧନ୍ଦା ଭିତ୍ତିକ ପାଠ୍ୟକ୍ରମ ପ୍ରବର୍ତ୍ତନପାଇଁ ସବୁଠାରେ ଜୋର ଦିଆଯାଉଛି । କିନ୍ତୁ ପ୍ରକୃତ କ୍ଷେତ୍ରରେ ସେଥିର ସଫଳ ପ୍ରୟୋଗ ଅଭାବରୁ ତାହାର ସୁଫଳ ମିଳୁନାହିଁ । କିନ୍ତୁ ଏବେ ମଧ୍ୟ-ପ୍ରଦେଶରେ ଦୂରଦୂରାନ୍ତରର ଅପେକ୍ଷାକୃତ ଅଗମ୍ୟ ଅଞ୍ଚଳରେ ଏହାର ସଫଳ ପ୍ରୟୋଗହୋଇ ସୁଫଳ ମିଳିବାର ସମ୍ବାଦ ସମ୍ବାଦପତ୍ରରେ ପ୍ରକାଶିତ ହୋଇଛି । ମଧ୍ୟପ୍ରଦେଶରେ ୩୫୦ ପ୍ରାଥମିକ ବିଦ୍ୟାଳୟରେ ରାଜ୍ୟର ଖଦୀ ଓ ଗ୍ରାମୋଦ୍ୟୋଗ ପ୍ରତିଷ୍ଠାନ ପକ୍ଷରୁ କେଉଁ ଧନ୍ଦାରେ କେଉଁ ବିଦ୍ୟାଳୟରେ ତାଲିମ ଦିଆଯିବ, ତାହା ସ୍ଥିର କରାଯାଇ ସେଥିର ବ୍ୟବସ୍ଥା କରାଯାଇଛି । ଏହି ତାଲିମ ପାଉବାବେଳେ ଯେଉଁ ସାମଗ୍ରୀ ପ୍ରସ୍ତୁତ ହେଉଛି ତାକୁ ଶିକ୍ଷାବିଭାଗ ପାଇକାରୀ ହାରରେ କିଣି ନେଉଛନ୍ତି । ଏହାଫଳରେ ପ୍ରତ୍ୟେକ ପିଲା ପାଠ ପଢ଼ିବା ସଙ୍ଗେ ସଙ୍ଗେ ଦିନକୁ ୩ଟଙ୍କା ରୋଜଗାର କରିପାରୁଛି । ଏଣୁ ଏହି ବିଦ୍ୟାଳୟରୁ ପିଲାଏ ପାଠଛାଡ଼ି ଚାଲିଯିବା ବିରଳ ହେଲଣି ।

ବହୁ ଅଶିକ୍ଷିତ ଦରିଦ୍ର ଅଭିଭାବକଙ୍କର ମତ ଯେ ପିଲା ବିଦ୍ୟାଳୟକୁ ଯାଇ ଅଯଥାରେ ଖେଳିବୁଲି ପାଠପଢ଼ି ସମୟ ନଷ୍ଟ କରୁଛି । ସେଥିରୁ ସେମାନେ କୌଣସି ତତ୍କାଳିନ ସାହାଯ୍ୟ ପାଉନାହାନ୍ତି । ତେଣୁ ଅଭିଭାବକମାନେ, ଉପରୋକ୍ତ ଉପାୟରେ ଯଦି କ୍ଷତିପୂରଣ ପାଆନ୍ତେ, ତାହାହେଲେ ଏଭଳି ଅଭିଯୋଗ ସେମାନେ ନକରି ବରଂ ବିଦ୍ୟାଳୟକୁ ପିଲାକୁ ପଠାଇବାରେ ବ୍ୟବସାର ଉତ୍ସାହ ପ୍ରକାଶ କରନ୍ତେ । S. U. P. W. ସଫଳ ରୂପାୟନ ନିଶ୍ଚିତ ଭାବରେ ସମାଜର ଅଶେଷ ଉନ୍ନତି ସାଧନ କରିବ । ଅଭିଭାବକମାନେ ପିଲାମାନେ ପାଠ ପଢ଼ିବା ଯେ କ୍ଷତିକାରକ ଏ ଚିନ୍ତା ମନରୁ ଦୂର କରିବେ ଏବଂ ଏଥିପାଇଁ ପ୍ରୌଢ଼ଶିକ୍ଷା ମାଧ୍ୟମରେ ଶିକ୍ଷା ବ୍ୟବସ୍ଥା ବିଦ୍ୟାଳୟକୁ ଆଦର୍ଶସ୍ଥାନୀୟ କଲେ ଶୀଘ୍ର ସୁଫଳ ମିଳିବ ।

ଆଦିବାସୀ ପିଲାମାନଙ୍କ ମଧ୍ୟରେ ପ୍ରଥମରୁ ମାଦକଦ୍ରବ୍ୟର ବ୍ୟବହାର ଉପରେ କିପରି କଟକଣା ପ୍ରୟୋଗ କରାଯିବ ତାହା ଏକ ଚିନ୍ତାର ବିଷୟ । ଏଠାରେ ଫୁଲବାଣୀ ଜିଲ୍ଲାର ଏକ ବିଦ୍ୟାଳୟର ନିର୍ଦ୍ଦିଷ୍ଟ ଉଦାହରଣ ଉଲ୍ଲେଖ କରାଯାଇପାରେ । ଦିନେ ଗୋଟିଏ ଆବାସିକ ଉଚ୍ଚ ବିଦ୍ୟାଳୟ ନିକଟରେ ବସ୍‌କୁ ଅପେକ୍ଷା କରି ସନ୍ଧ୍ୟା ୪ଟାରୁ ୬ଟା ପର୍ଯ୍ୟନ୍ତ ଛିଡ଼ା ହେବାକୁ ପଡ଼ିଥିଲା । ବସଷ୍ଟାଣ୍ଡ ନିକଟରେ ଗୋଟିଏ ଛୋଟ ଦୋକାନ ଯେଉଁଥିରେ କି ଲଜେନ୍‌ସ, ବିସ୍କୁଟ ପ୍ରଭୃତି ଖାଦ୍ୟ ଦ୍ରବ୍ୟ ସହିତ ବିଡ଼ି, ଗୁଡ଼ାଖୁ, ଧୂଆଁପତ୍ର ପ୍ରଭୃତି ମାଦକ ଦ୍ରବ୍ୟ ମହଜୁଦ ଥିଲା । ବିଦ୍ୟାଳୟ ୪ଟାରେ ଛୁଟି ହେବା ପରେ ହଷ୍ଟେଲର ବିଭିନ୍ନ ବୟସର ଆଦିବାସୀ କିଶୋରଗଣ ଦଳ ଦଳ ହୋଇ ସେ ଦୋକାନରୁ ଜିନିଷ କ୍ରୟ କରିବାକୁ ଆସିଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ପ୍ରାୟ ୬୦/୭୦ ପିଲାଙ୍କ ମଧ୍ୟରୁ ମାତ୍ର ୧୦/୧୨ ଜଣ ଖାଦ୍ୟ ଦ୍ରବ୍ୟ କ୍ରୟ କରିଥିଲେ ଓ ଅନ୍ୟ ସମସ୍ତେ କେବଳ ମାଦକ ଦ୍ରବ୍ୟ କ୍ରୟକରି ସେବନ କରିଥିଲେ । ସେମାନଙ୍କ ସହିତ ବହୁ ସମୟ କଥାବାର୍ତ୍ତାରୁ ଜଣା ପଡ଼ିଲା ଯେ ଏହି ମାଦକ ଦ୍ରବ୍ୟ କ୍ରୟ ପାଇଁ ଗୃହରୁ ସେମାନଙ୍କୁ ଅର୍ଥ ମିଳି ନଥିଲା । ମିଳିଥିଲା ମେସ୍‌ରୁ । ସେମାନେ ମଝିରେ 'ମଣ୍ଡିରେ ନିଜର ଖାଦ୍ୟ ବନ୍ଦକରି (ବିଭିନ୍ନ ଅବସରରେ) ମେସ୍‌ରୁ କିଛି ଅର୍ଥଲାଭ କରନ୍ତି ଓ ତାହାର ଏହିପରି ବିନିଯୋଗ ହୁଏ । ସେମାନେ ଗୃହକୁ ଗଲେ ମଧ୍ୟ ମାଦକ ଦ୍ରବ୍ୟ ସେବନ ପାଇଁ କୌଣସି କଟକଣା ନ ଥାଏ । ତେଣୁ ସେମାନଙ୍କର ଏହି ବଦଭ୍ୟାସ ଦୂର କରିବା ଅବଶ୍ୟ କଷ୍ଟକର । କିନ୍ତୁ ଏହାର ଦାୟିତ୍ୱ ସରକାର, ଜନ-ସାଧାରଣ ଓ ଶିକ୍ଷକ ସମାଜର ।

ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଦ୍ୱାରା ପରିଚାଳିତ ବିଦ୍ୟାଳୟମାନଙ୍କରେ ଆଦିବାସୀ ପିଲାମାନଙ୍କୁ ସେମାନଙ୍କର ଷ୍ଟାଇପେଣ୍ଡ ନିୟମିତ ଦେବାର ବ୍ୟବସ୍ଥା କରାଗଲେ କେତେକ ଅସୁବିଧାର ଦୂରୀକରଣ ହୋଇପାରନ୍ତା । କେବଳ କର୍ତ୍ତୃପକ୍ଷ ସାମାନ୍ୟ ଯତ୍ନବାନ ହେଲେ ତାହାର ନିରାକରଣ ସମ୍ଭବ । କିନ୍ତୁ ଅନ୍ୟ ବିଦ୍ୟାଳୟମାନଙ୍କରେ ତାହା ପ୍ରାୟ ବର୍ଷ ଶେଷରେ ମିଳେ । ତେଣୁ ସେ ସମୟରେ ତାହା ପିଲାର ପଢ଼ା ଖର୍ଚ୍ଚରେ ନ ଲାଗି ତାର ବିଳାସ ବ୍ୟସନରେ ବ୍ୟୟିତ ହୁଏ । ଅଭିଭାବକ ବର୍ଷସାରା ବହୁ କଷ୍ଟ ସ୍ୱୀକାର କରି ପିଲାର ପଢ଼ାଖର୍ଚ୍ଚ ଯୋଗାଏ । ତେଣୁ ଷ୍ଟାଇପେଣ୍ଡ ଯଦି ବିଦ୍ୟାଳୟମାନଙ୍କରେ ପ୍ରତିମାସ ଆରମ୍ଭରେ ଦିଆଯାଆନ୍ତା, ତେବେ ପିଲାର ପ୍ରକୃତ ପଢ଼ାଖର୍ଚ୍ଚରେ ତାହା ବ୍ୟୟିତ ହୋଇ ପାରନ୍ତା । ଅଭିଭାବକ ମଧ୍ୟ ଉପକୃତ ହୁଅନ୍ତେ । ସରକାରୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକଙ୍କ ପାଖକୁ ବର୍ଷ ଆରମ୍ଭରୁ Allotment ପଠାଇବା ଉଚିତ । ଯେପରି କି ଅନ୍ୟ କର୍ମଚାରୀଙ୍କ ଦରମା ପ୍ରଧାନ ଶିକ୍ଷକ ଡ୍ର କରି ଦିଅନ୍ତି, ସେହିପରି ପିଲାମାନଙ୍କୁ ଷ୍ଟାଇପେଣ୍ଡ ମଧ୍ୟ ଦିଆଯିବା ଉଚିତ । ଘରୋଇ ବିଦ୍ୟାଳୟମାନଙ୍କରେ Walfare Extension Officer ପ୍ରଧାନ ଶିକ୍ଷକଙ୍କ ଜରିଆରେ ପ୍ରତି ମାସ ଆରମ୍ଭରେ ଏହା ପିଲାଙ୍କୁ ପ୍ରଦାନ କରିବା ଉଚିତ ।

ଷ୍ଟାଇପେଣ୍ଡର ପରିମାଣ ସମସ୍ତ ଆଦିବାସୀ ପିଲାଙ୍କ ପାଇଁ ସମାନ ହେବା ଉଚିତ ନୁହେଁ । ଏହାର ପରିମାଣ ପିତା ମାତାଙ୍କର ଆୟ ଉପରେ ନିର୍ଦ୍ଧାରଣ କରାଯିବା ଉଚିତ । ଯେଉଁମାନଙ୍କର ପିତାମାତାଙ୍କର ଆୟ ବହୁତ ବେଶୀ, ସେମାନଙ୍କୁ ଅଣଆଦିବାସୀ ପିଲାଭଳି ବ୍ୟବହାର କରାଯିବା ଉଚିତ । କିନ୍ତୁ ଦିନ ମଜୁରିଆ ଓ ଭୂମିହୀନ ପିତାମାତାଙ୍କର ପିଲାମାନଙ୍କୁ ଅନ୍ୟମାନଙ୍କଠାରୁ ଅଧିକ ହାରରେ ଷ୍ଟାଇପେଣ୍ଡ ଦିଆଯିବା ଉଚିତ । ସର୍ବୋପରି ବର୍ତ୍ତମାନର ଷ୍ଟାଇପେଣ୍ଡର ପରିମାଣ ବଜାର ଦର ଅନୁଯାୟୀ ବୃଦ୍ଧି କରିବା ଉଚିତ । ବର୍ତ୍ତମାନ ଅବସ୍ଥାରେ ତାହାର ପରିମାଣ ଏତେ ସ୍ୱଳ୍ପ ଯେ ସେଥିରେ ପିଲାମାନଙ୍କର ଖାଦ୍ୟ ଇତ୍ୟାଦିର ବ୍ୟବସ୍ଥା କରିବା ବଡ଼ କଷ୍ଟକର ହୋଇଥାଏ ।

ଆଦିବାସୀ ବାଳକ ବାଳିକାମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନଙ୍କର ମେଧାଶକ୍ତି ଅତି ଉଚ୍ଚମାନର । ସେମାନେ ଅନ୍ୟମାନଙ୍କ ଭଳି ସୁଯୋଗ ପାଇଲେ ତାଙ୍କର

କୃତିତ୍ୱ ସହଜରେ ପ୍ରଦର୍ଶନ କରିପାରନ୍ତି । ତେଣୁ ସେଭଳି ଉଚ୍ଚ ମେଧାଶକ୍ତି ସମ୍ପନ୍ନ ବାଳକ ବାଳିକାମାନଙ୍କୁ ଷ୍ଟାଇପେଣ୍ଡ ବ୍ୟତୀତ ଅନ୍ୟ ସ୍ୱତନ୍ତ୍ର ଆକର୍ଷଣୀୟ ସୁବିଧାର ବ୍ୟବସ୍ଥା କରାଯିବା ଉଚିତ ।

ବିଦ୍ୟାଳୟର ଛୁଟି ସ୍ଥାନୀୟ ପର୍ବପର୍ବାଣୀ ଅନୁଯାୟୀ ହେବା ଉଚିତ । ସମସ୍ତ ବିଦ୍ୟାଳୟ ପାଇଁ ଏକ ପ୍ରକାରର ଛୁଟି ତାଲିକା ପିଲାମାନଙ୍କର ବିଦ୍ୟାଳୟରେ ଉପସ୍ଥାନ ଉପରେ କୁପ୍ରଭାବ ପକାଇଥାଏ ।

ଆବାସିକ ବିଦ୍ୟାଳୟମାନଙ୍କରେ ସ୍ଥାନ ସଂଖ୍ୟା ବଢ଼ାଯାଇ ବିଦ୍ୟାଳୟରେ ଆବଶ୍ୟକ ସ୍ଥଳେ ସିଫଟ୍ ସିଷ୍ଟମ ପ୍ରବର୍ତ୍ତନ କରାଗଲେ ସୁବିଧା ହେବ । କାରଣ ଅଧିକ ଆବଶ୍ୟକତା ଥିବାରୁ ଆଉ ଗୋଟିଏ ବିଦ୍ୟାଳୟ ସ୍ଥାପନ ଅପେକ୍ଷା ସିଫ୍ଟ ସିଷ୍ଟମରେ ଅପେକ୍ଷାକୃତ କମ ଖର୍ଚ୍ଚ ହେବ ।

ଶିକ୍ଷକ ଓ ଛାତ୍ର ଅନୁପାତ ୧:୨୦ ରଖାଯିବା ବାଞ୍ଛନୀୟ । କାରଣ ପିଲା ସଂଖ୍ୟା ଏହାଠାରୁ ଅଧିକ ହେବାରୁ ଶିକ୍ଷକ ପ୍ରତ୍ୟେକ ଛାତ୍ରପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବାକୁ ଉପଯୁକ୍ତ ସମୟ ପାଉ ନାହାନ୍ତି । ତଦୁପରି ଅଭିଭାବକମାନଙ୍କର ପିଲାମାନଙ୍କ ପାଇଁ ଘରୋଇ ଟିଉସନ ପାଇଁ ଅର୍ଥର ଘୋର ଅଭାବ । ଛାତ୍ର ଶ୍ରେଣୀକକ୍ଷରେ ଯାହା ଜ୍ଞାନ ଅର୍ଜନ କରେ, ଅନ୍ୟ ସମୟରେ ତା' ପାଇଁ ସୁବିଧା ନ ଥାଏ ।

ଅନ୍ୟଥା ପ୍ରତ୍ୟେକ ଛାତ୍ର ଛାତ୍ରୀପାଇଁ ବିଦ୍ୟାଳୟରେ ବିଦ୍ୟାଳୟ ସମୟ ବାହାରେ ସରକାରୀ ଟିଉସନର ବ୍ୟବସ୍ଥା ରହିବା ଉଚିତ । ଯେଉଁ ବିଷୟରେ ଛାତ୍ରମାନେ ଉତ୍କୃଷ୍ଟ ଯୋଗ୍ୟ କୃତିତ୍ୱ ଦେଖାଇବେ ସେହି ବିଷୟର ଶିକ୍ଷକମାନଙ୍କୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ନିୟମିତ ଦିଆଯିବା ଉଚିତ । ତେବେ ଶିକ୍ଷକ ମଧ୍ୟ ସେ କାର୍ଯ୍ୟ ପାଇଁ ଉତ୍ସାହିତ ହେବେ । ଶିକ୍ଷକମାନଙ୍କ ମନରେ ଧାରଣା ରହିବା ଉଚିତ ନୁହେଁ ଯେ ତାର ଏହି କଷ୍ଟାର୍ଜିତ ଧନ ବାଟମାରଣା ହୋଇଯିବ ।

ଯେଉଁ ଶିକ୍ଷକ ଆଦିବାସୀ ଅଞ୍ଚଳମାନଙ୍କରେ କାର୍ଯ୍ୟ କରିବେ ସେମାନେ ସାଧୁ, କର୍ତ୍ତବ୍ୟନିଷ୍ଠ, ଉଚ୍ଚ ଗୁଣ ସମ୍ପନ୍ନ ହେବା ଉଚିତ । ସେମାନଙ୍କର ସେବା ମନୋଭାବ ଥିବା ଆବଶ୍ୟକ । ସେମାନେ ବିଶ୍ୱବିଦ୍ୟାଳୟର କୃତୀଛାତ୍ର ହୋଇଥିବା ଆବଶ୍ୟକ । ଯିଏ ସମସ୍ତ କାର୍ଯ୍ୟପାଇଁ ଅନୁପଯୁକ୍ତ ସେ ଶିକ୍ଷକତା ପାଇଁ ଉପଯୁକ୍ତ । ଏଭଳି ଧାରଣା ଦୂର କରିବା ଉଚିତ ।

ଅଗମ୍ୟ ଅଞ୍ଚଳରେ ସହରଠାରୁ ବହୁ ଦୂରରେ ଯେଉଁ ପ୍ରାଥମିକ ଶିକ୍ଷକମାନେ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ପାଇଁ "ପରିବାର ଭତ୍ତା" ଦିଆଯିବା ଉଚିତ । ତାହା ହେଲେ ସେମାନେ ବାରମ୍ବାର ବିଦ୍ୟାଳୟରୁ ଅନୁପସ୍ଥିତ ରହିବା ଦିଗରେ ସ୍ୱତଃ ଆଗ୍ରହାନ୍ୱିତ ହେବେ ନାହିଁ । ଅଗମ୍ୟ ଅଞ୍ଚଳରେ ଥିବାରୁ ସ୍ୱଳ୍ପ ବେତନରେ ରହିବା କଷ୍ଟସାଧ୍ୟ ଓ ପରିବାର ସେଠାରେ ରଖିବା ମଧ୍ୟ ବ୍ୟୟ ବହୁଳ । ଯଥେଷ୍ଟ ପରିବାର ଭତ୍ତା ପାଇଲେ ସେମାନେ ନିଜ ପରିବାରକୁ ପାଖରେ ରଖିବାକୁ ବାଧ୍ୟ ହେବେ ଓ ନିଜ ଗ୍ରାମକୁ ବାରମ୍ବାର ଯିବାର ପ୍ରବୃତ୍ତି କମିଯିବ । ଅବଶ୍ୟ ଏହି ଭତ୍ତା ଦେବା ପୂର୍ବରୁ ଠିକ୍ ଭାବେ ଯାଞ୍ଚ ହେବା ଉଚିତ ଓ ସାଧୁ, କର୍ତ୍ତବ୍ୟନିଷ୍ଠ କର୍ମଚାରୀଙ୍କ ଦ୍ୱାରା ଏହା କରାଯିବା ଉଚିତ । ଯେପରି କି ଏହାର ଅପବ୍ୟବହାର ନ ହୁଏ । ସର୍ବୋପରି ପ୍ରାଥମିକ ଶିକ୍ଷକଙ୍କ ଶିକ୍ଷାଗତ ଯୋଗ୍ୟତା ତାଲିମପ୍ରାପ୍ତ ଇଣ୍ଟରମିଡିଏଟ ହେବା ଆବଶ୍ୟକ ଏହା ସମ୍ଭବ ନ ହେଲେ ଗଣିତ ଓ ବିଜ୍ଞାନ କ୍ଷେତ୍ରରେ ପ୍ରତି ବିଦ୍ୟାଳୟ ପାଇଁ ଜଣେ ତାଲିମ ପ୍ରାପ୍ତ ଇଣ୍ଟରମିଡିଏଟ ବିଜ୍ଞାନ ଶିକ୍ଷକ ରହିବା ବର୍ତ୍ତମାନର ପାଠ୍ୟ ଖସଡ଼ା ଦୃଷ୍ଟିରୁ ବାଞ୍ଛନୀୟ ।

ସାଧାରଣତେ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ପ୍ରତି ହେୟ ଭାବ ଦୂର କରିବା ପାଇଁ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ନିଆଯିବା ଉଚିତ । ବହୁ ବ୍ୟକ୍ତିଙ୍କ ଧାରଣା ଯେ ଏହି ବିଭାଗରେ ଶିକ୍ଷକତା କଲେ ଘରେ ରହି ଦରମା ମିଳେ । ପିଲାମାନଙ୍କ ଷ୍ଟାଇପେଣ୍ଡ ନେଇ ବହୁ ପ୍ରକାରର ଅଭିଯୋଗ ବାରମ୍ବାର ହୁଏ । ଉପରିସ୍ଥ କର୍ମଚାରୀଙ୍କୁ ସନ୍ତୁଷ୍ଟ କଲେ ସବୁ ସମ୍ଭବ । ଏ ଭଳି ଧାରଣା ଦୂରୀଭୂତ ନ ହେଲେ ଯେଉଁ ମହତ୍ ଚେଷ୍ଟା ଚାଲିଛି ତାହା ଧୂଳିସାତ୍ ହୋଇଯିବ ।

ପ୍ରାଥମିକ ବିଦ୍ୟାଳୟରେ ପିଲାମାନଙ୍କୁ ଯେଉଁ ମାଗଣା ଖାଦ୍ୟ ଯୋଗାଣ ବ୍ୟବସ୍ଥା ଅଛି, ତାହା ସ୍ୱାଗତ ଯୋଗ୍ୟ । କିନ୍ତୁ ଏହି ବ୍ୟବସ୍ଥା ସୁଷ୍ଠୁ ଭାବେ ପରିଚାଳିତ ନ ହେବାର ବହୁ ଅଭିଯୋଗ ମିଳେ । ବହୁ ସ୍ଥାନରେ ଅଭିଯୋଗ ହୋଇଛି ଯେ, ଖାଦ୍ୟ ପିଲାମାନଙ୍କୁ ମିଳେ ନାହିଁ ବା ମିଳିଲେ ବି ତାହା ଖାଦ୍ୟ ଉପଯୋଗୀ ହୋଇ ନ ଥାଏ । ଏ ଭଳି ଅଭିଯୋଗ ମଧ୍ୟ ମିଳିଛି ଯେ, ବିଦ୍ୟାଳୟରେ କେବଳ ଖାଦ୍ୟ ମିଳେ କିନ୍ତୁ ବିଦ୍ୟା ମିଳେ ନାହିଁ । ଶିକ୍ଷକଙ୍କର ଦାୟିତ୍ୱ ପିଲାମାନଙ୍କୁ ଖାଦ୍ୟ ଯୋଗାଇ ଦେଇ ରନ୍ଧନ ଶିଖାଇବା । କାରଣ ଶିକ୍ଷକ ଭାବନ୍ତି ଯେ ଆଦିବାସୀ ପିଲାଙ୍କ ଦ୍ୱାରା ପାଠ ପଢ଼ା ହେବ ନାହିଁ । ଏ ମନ ବୃତ୍ତିର ପରିବର୍ତ୍ତନ ହେବା ବିଧେୟ ।

ସବୁଠାରୁ ବଡ଼ କଥା ହେଉଛି ଯେଉଁ ଶିକ୍ଷକ ଆଦିବାସୀ-ମାନଙ୍କ ମଧ୍ୟରେ କାର୍ଯ୍ୟ କରିବେ, ସେମାନଙ୍କର ମନୋଭାବ ଆଦିବାସୀମାନଙ୍କ ପ୍ରତି ଉପଯୁକ୍ତ ଭାବେ ସହାୟକ ହେବା ଆବଶ୍ୟକ । ଗୋଟିଏ ବିଦ୍ୟାଳୟରେ ଜଣେ ଶିକ୍ଷକ ଯାହାଙ୍କର ଦେହର ବର୍ଣ୍ଣ ଶ୍ୟାମଳ ଗୋଟିଏ କୃଷ୍ଣ ବର୍ଣ୍ଣର ଦୁଷ୍ଟ ଆଦିବାସୀ ବାଳକକୁ ସ୍ନେହରେ ଦୁଇ ଚାପୁଡ଼ା ଦେଇ ସାରି ପରେ ନିଜ ହାତକୁ ଟେବୁଲରେ ଭଲ ଭାବରେ ଘସିଲେ । ଏହାର ଉଦ୍ଦେଶ୍ୟ ଏହି ଯେ କୃଷ୍ଣ ବର୍ଣ୍ଣର ବାଳକର ଚର୍ମରୁ କିଛି କଳାରଙ୍ଗ ତାଙ୍କ ହାତ ପାପୁଲିରେ ଲାଗି ଯାଇଥିବ ଓ ତାକୁ ସଫା କରିବା ନିହାତି ଦରକାର । ଯଦି ଏ ଭଳି ମନୋଭାବାପନ୍ନ ଶିକ୍ଷକ କୋମଳ ମତି ବାଳକର ଶିକ୍ଷା ଦାୟିତ୍ୱରେ ରହନ୍ତି ତେବେ ଶିକ୍ଷାର ଗତି କେଉଁ ଆଡ଼କୁ ହେବ ତାହା ସହଜରେ ଅନୁମେୟ ।

ସର୍ବୋତ୍ତମ ବ୍ୟବସ୍ଥା ଏହି ଯେ ପ୍ରାଥମିକ ଶିକ୍ଷକ ସର୍ବଦା ସେହି ସମ୍ପ୍ରଦାୟ ମଧ୍ୟରୁ ନିଯୁକ୍ତି ହେବା ଉଚିତ । ତଦ ଅଭାବେ ଅନ୍ୟ ଶିକ୍ଷକମାନେ ସ୍ଥାନୀୟ ଭାଷା, ସଂସ୍କୃତି ଓ ଲୋକ କଥା ସହ ନିବିଡ଼ ଭାବେ ପରିଚିତ ହେବା ନିହାତି ଆବଶ୍ୟକ । ତା' ନ ହେଲେ

ତେଣୁ ଆଉ ଅଧିକ ବିଦ୍ୟାଳୟ ନ ଖୋଲି ବରଂ ଯେତିକି ଅଛି ସେଗୁଡ଼ିକର ପୂର୍ଣ୍ଣ ବ୍ୟବସ୍ଥା ସର୍ବାଗ୍ରେ ଆବଶ୍ୟକ ।

କେନ୍ଦ୍ର ମନ୍ତ୍ରଣାଳୟର ହିସାବରୁ ଦେଖାଯାଏ ଯେ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ନାମ ଲେଖାଇଥିବା ପିଲାଙ୍କ ମଧ୍ୟରୁ ଶତକଡ଼ା ୬୩ଭାଗ ଶିକ୍ଷା ସମାପ୍ତ ହେବା ପୂର୍ବରୁ ବିଦ୍ୟାଳୟ ଛାଡ଼ି ଚାଲି ଯାଉଛନ୍ତି ଏବଂ ଏହାର କାରଣ ସ୍ୱରୂପ କେବଳ ପୁସ୍ତକ ଭିତ୍ତିକ ପାଠ୍ୟକ୍ରମ ପ୍ରବର୍ତ୍ତନ ବୋଲି ଦର୍ଶାଯାଉଛି । ତେଣୁ ବର୍ତ୍ତମାନ ଧନ୍ଦା ଭିତ୍ତିକ ପାଠ୍ୟକ୍ରମ ପ୍ରବର୍ତ୍ତନପାଇଁ ସବୁଠାରେ ଜୋର ଦିଆଯାଉଛି । କିନ୍ତୁ ପ୍ରକୃତ କ୍ଷେତ୍ରରେ ସେଥିର ସଫଳ ପ୍ରୟୋଗ ଅଭାବରୁ ତାହାର ସୁଫଳ ମିଳୁନାହିଁ । କିନ୍ତୁ ଏବେ ମଧ୍ୟପ୍ରଦେଶରେ ଦୂରଦୂରାନ୍ତରର ଅପେକ୍ଷାକୃତ ଅଗମ୍ୟ ଅଞ୍ଚଳରେ ଏହାର ସଫଳ ପ୍ରୟୋଗହୋଇ ସୁଫଳ ମିଳିବାର ସମ୍ବାଦ ସମ୍ବାଦପତ୍ରରେ ପ୍ରକାଶିତ ହୋଇଛି । ମଧ୍ୟପ୍ରଦେଶରେ ୩୫୦ ପ୍ରାଥମିକ ବିଦ୍ୟାଳୟରେ ରାଜ୍ୟର ଖଦୀ ଓ ଗ୍ରାମୋଦ୍ୟୋଗ ପ୍ରତିଷ୍ଠାନ ପକ୍ଷରୁ କେଉଁ ଧନ୍ଦାରେ କେଉଁ ବିଦ୍ୟାଳୟରେ ତାଲିମ ଦିଆଯିବ, ତାହା ସ୍ଥିର କରାଯାଇ ସେଥିର ବ୍ୟବସ୍ଥା କରାଯାଇଛି । ଏହି ତାଲିମ ପାଇବାବେଳେ ଯେଉଁ ସାମଗ୍ରୀ ପ୍ରସ୍ତୁତ ହେଉଛି ତାକୁ ଶିକ୍ଷାବିଭାଗ ସରକାରୀ ହାରରେ କିଣି ନେଉଛନ୍ତି । ଏହାଫଳରେ ପ୍ରତ୍ୟେକ ପିଲା ପାଠ ପଢ଼ିବା ସଙ୍ଗେ ସଙ୍ଗେ ଦିନକୁ ୩ଟଙ୍କା ରୋଜଗାର କରିପାରୁଛି । ଏଣୁ ଏହି ବିଦ୍ୟାଳୟରୁ ପିଲାଏ ପାଠଛାଡ଼ି ଚାଲିଯିବା ବିରଳ ହେଲାଣି ।

ବହୁ ଅଶିକ୍ଷିତ ଦରିଦ୍ର ଅଭିଭାବକଙ୍କର ମତ ଯେ ପିଲା ବିଦ୍ୟାଳୟକୁ ଯାଇ ଅଯଥାରେ ଖେଳିବୁଲି ପାଠପଢ଼ି ସମୟ ନଷ୍ଟ କରୁଛି । ସେଥିରୁ ସେମାନେ କୌଣସି ତତ୍କାଳିନ ସାହାଯ୍ୟ ପାଉନାହାନ୍ତି । ତେଣୁ ଅଭିଭାବକମାନେ ଉପରୋକ୍ତ ଉପାୟରେ ଯଦି କ୍ଷତିପୂରଣ ପାଆନ୍ତେ, ତାହାହେଲେ ଏଭଳି ଅଭିଯୋଗ ସେମାନେ ନକରି ବରଂ ବିଦ୍ୟାଳୟକୁ ପିଲାକୁ ପଠାଇବାରେ ବ୍ୟବସ୍ଥାର ଉତ୍ସାହ ପ୍ରକାଶ କରନ୍ତେ । S. U. P. W. ସଫଳ ରୂପାୟନ ନିଶ୍ଚିତ ଭାବରେ ସମାଜର ଅଶେଷ ଉନ୍ନତି ସାଧନ କରିବ । ଅଭିଭାବକମାନେ ପିଲାମାନେ ପାଠ ପଢ଼ିବା ଯେ କ୍ଷତିକାରକ ଏ ଚିନ୍ତା ମନରୁ ଦୂର କରିବେ ଏବଂ ଏଥିପାଇଁ ପ୍ରୌଢ଼ଶିକ୍ଷା ମାଧ୍ୟମରେ ଶିକ୍ଷା ବ୍ୟବସ୍ଥା ବିଦ୍ୟାଳୟକୁ ଆଦର୍ଶସ୍ଥାନୀୟ କଲେ ଶୀଘ୍ର ସୁଫଳ ମିଳିବ ।

ଆଦିବାସୀ ପିଲାମାନଙ୍କ ମଧ୍ୟରେ ପ୍ରଥମରୁ ମାଦକଦ୍ରବ୍ୟର ବ୍ୟବହାର ଉପରେ କିପରି କଟକଣା ପ୍ରୟୋଗ କରାଯିବ ତାହା ଏକ ଚିନ୍ତାର ବିଷୟ । ଏଠାରେ ଫୁଲବାଣୀ ଜିଲ୍ଲାର ଏକ ବିଦ୍ୟାଳୟର ନିର୍ଦ୍ଦିଷ୍ଟ ଉଦାହରଣ ଉଲ୍ଲେଖ କରାଯାଇପାରେ । ଦିନେ ଗୋଟିଏ ଆବାସିକ ଉଚ୍ଚ ବିଦ୍ୟାଳୟ ନିକଟରେ ବସ୍‌କୁ ଅପେକ୍ଷା କରି ସନ୍ଧ୍ୟା ୪ଟାରୁ ୬ଟା ପର୍ଯ୍ୟନ୍ତ ଛିଡ଼ା ହେବାକୁ ପଡ଼ିଥିଲା । ବସଷ୍ଟାଣ୍ଡ ନିକଟରେ ଗୋଟିଏ ଛୋଟ ଦୋକାନ ଯେଉଁଥିରେ କି ଲଜେନ୍‌ସ, ବିସ୍କୁଟ ପ୍ରଭୃତି ଖାଦ୍ୟ ଦ୍ରବ୍ୟ ସହିତ ବିଡ଼ି, ଗୁଣ୍ଡାଖୁ, ଧୂଆଁପତ୍ର ପ୍ରଭୃତି ମାଦକ ଦ୍ରବ୍ୟ ମହଜୁଦ ଥିଲା । ବିଦ୍ୟାଳୟ ୪ଟାରେ ଛୁଟି ହେବା ପରେ ହଷ୍ଟେଲର ବିଭିନ୍ନ ବୟସର ଆଦିବାସୀ କିଶୋରଗଣ ଦଳ ଦଳ ହୋଇ ସେ ଦୋକାନରୁ ଜିନିଷ କ୍ରୟ କରିବାକୁ ଆସିଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ପ୍ରାୟ ୬୦/୭୦ ପିଲାଙ୍କ ମଧ୍ୟରୁ ମାତ୍ର ୧୦/୧୨ ଜଣ ଖାଦ୍ୟ ଦ୍ରବ୍ୟ କ୍ରୟ କରିଥିଲେ ଓ ଅନ୍ୟ ସମସ୍ତେ କେବ[illegible] ମାଦକ ଦ୍ରବ୍ୟ କ୍ରୟକରି ସେବନ କରିଥିଲେ । ସେମାନ[illegible] ସହିତ ବହୁ ସମୟ କଥାବାର୍ତ୍ତାରୁ ଜଣା ପଡ଼ିଲା ଯେ ଏହି ମାଦ[illegible] ଦ୍ରବ୍ୟ କ୍ରୟ ପାଇଁ ଗୃହରୁ ସେମାନଙ୍କୁ ଅର୍ଥ ମିଳି ନଥିଲ[illegible] ମିଳିଥିଲା ମେସ୍‌ରୁ । ସେମାନେ ମଝିରେ 'ମିଲ୍‌ରେ ନିଜର ୧୦[illegible] ବନ୍ଦକରି (ବିଭିନ୍ନ ଅବସରରେ) ମେସ୍‌ରୁ କିଛି ଅର୍ଥ ଫେରାଇ କରନ୍ତି [illegible] ତାହାର ଏହିପରି ବିନିଯୋଗ ହୁଏ । ସେମାନେ ଗୃହକୁ ଗଲେ ମଧ୍ୟ ମାଦକ ଦ୍ରବ୍ୟ ସେବନ ପାଇଁ କୌଣସି କଟକଣା ନ ଥାଏ । ତେଣୁ ସେମାନଙ୍କର ଏହି କୁଭାବ ଦୂର କରିବା ଅବଶ୍ୟ କଷ୍ଟକର । କିନ୍ତୁ ଏହାର ଦାୟିତ୍ୱ ସରକାର, ଜନସାଧାରଣ ଓ ଶିକ୍ଷକ ସମାଜର ।

ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଦ୍ୱାରା ପରିଚାଳିତ ବିଦ୍ୟାଳୟମାନଙ୍କରେ ଆଦିବାସୀ ପିଲାମାନଙ୍କୁ ସେମାନଙ୍କର ଷ୍ଟାଇପେଣ୍ଡ ନିୟମିତ ଦେବାର ବ୍ୟବସ୍ଥା କରାଗଲେ କେତେକ ଅସୁବିଧାର ଦୂରୀକରଣ ହୋଇପାରନ୍ତା । କେବଳ କର୍ତ୍ତୃପକ୍ଷ ସାମାନ୍ୟ ଯତ୍ନବାନ ହେଲେ ତାହାର ନିରାକରଣ ସମ୍ଭବ । କିନ୍ତୁ ଅନ୍ୟ ବିଦ୍ୟାଳୟମାନଙ୍କରେ ତାହା ପ୍ରାୟ ବର୍ଷ ଶେଷରେ ମିଳେ । ତେଣୁ ସେ ସମୟରେ ତାହା ପିଲାର ପଢ଼ା ଖର୍ଚ୍ଚରେ ନ ଲାଗି ତାର ବିଳାସ ବ୍ୟସନରେ ବ୍ୟୟିତ ହୁଏ । ଅଭିଭାବକ ବର୍ଷସାରା ବହୁ କଷ୍ଟ ସ୍ୱୀକାର କରି ପିଲାର ପଢ଼ାଖର୍ଚ୍ଚ ଯୋଗାଏ । ତେଣୁ ଷ୍ଟାଇପେଣ୍ଡ ଯଦି ବିଦ୍ୟାଳୟମାନଙ୍କରେ ପ୍ରତିମାସ ଆରମ୍ଭରେ ଦିଆଯାଆନ୍ତା, ତେବେ ପିଲାର ପ୍ରକୃତ ପଢ଼ାଖର୍ଚ୍ଚରେ ତାହା ବ୍ୟୟିତ ହୋଇ ପାରନ୍ତା । ଅଭିଭାବକ ମଧ୍ୟ ଉପକୃତ ହୁଅନ୍ତେ । ସରକାରୀ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକଙ୍କ ପାଖକୁ ବର୍ଷ ଆରମ୍ଭରୁ Allotment ପଠାଇବା ଉଚିତ । ଯେପରି କି ଅନ୍ୟ କର୍ମଚାରୀଙ୍କ ଦରମା ପ୍ରଧାନ ଶିକ୍ଷକ ଡ୍ର କରି ଦିଅନ୍ତି, ସେହିପରି ପିଲାମାନଙ୍କୁ ଷ୍ଟାଇପେଣ୍ଡ ମଧ୍ୟ ଦିଆଯିବା ଉଚିତ । ସରକାରୀ ବିଦ୍ୟାଳୟମାନଙ୍କରେ Walfare Extension Officer ପ୍ରଧାନ ଶିକ୍ଷକଙ୍କ ଜରିଆରେ ପ୍ରତି ମାସ ଆରମ୍ଭରେ ଏହା ପିଲାଙ୍କୁ ପ୍ରଦାନ କରିବା ଉଚିତ ।

ଷ୍ଟାଇପେଣ୍ଡର ପରିମାଣ ସମସ୍ତ ଆଦିବାସୀ ପିଲାଙ୍କ ପାଇଁ ସମାନ ହେବା ଉଚିତ ନୁହେଁ । ଏହାର ପରିମାଣ ପିତାମାତାଙ୍କର ଆୟ ଉପରେ ନିର୍ଦ୍ଧାରଣ କରାଯିବା ଉଚିତ । ଯେଉଁମାନଙ୍କର ପିତାମାତାଙ୍କର ଆୟ ବହୁତ ବେଶୀ, ସେମାନଙ୍କୁ ଅଣଆଦିବାସୀ ପିଲାଭଳି ବ୍ୟବହାର କରାଯିବା ଉଚିତ । କିନ୍ତୁ ଦିନ ମଜୁରିଆ ଓ ଭୂମିହୀନ ପିତାମାତାଙ୍କର ପିଲାମାନଙ୍କୁ ଅନ୍ୟମାନଙ୍କଠାରୁ ଅଧିକ ହାରରେ ଷ୍ଟାଇପେଣ୍ଡ ଦିଆଯିବା ଉଚିତ । ସର୍ବୋପରି ବର୍ତ୍ତମାନର ଷ୍ଟାଇପେଣ୍ଡର ପରିମାଣ ବଜାର ଦର ଅନୁଯାୟୀ ବୃଦ୍ଧି କରିବା ଉଚିତ । ବର୍ତ୍ତମାନ ଅବସ୍ଥାରେ ତାହାର ପରିମାଣ ଏତେ ସ୍ୱଳ୍ପ ଯେ ସେଥିରେ ପିଲାମାନଙ୍କର ଖାଦ୍ୟ ଇତ୍ୟାଦିର ବ୍ୟବସ୍ଥା କରିବା ବଡ଼ କଷ୍ଟକର ହୋଇଥାଏ ।

ଆଦିବାସୀ ବାଳକ ବାଳିକାମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନଙ୍କର ମେଧାଶକ୍ତି ଅତି ଉଚ୍ଚମାନର । ସେମାନେ ଅନ୍ୟମାନଙ୍କ ଭଳି ସୁଯୋଗ ପାଇଲେ ତାଙ୍କର

କୃତିତ୍ୱ ସହଜରେ ପ୍ରଦର୍ଶନ କରିପାରନ୍ତି । ତେଣୁ ସେଭଳି ଉଚ୍ଚ ମଧାଶକ୍ତି ସମ୍ପନ୍ନ ବାଳକ ବାଳିକାମାନଙ୍କୁ ଷ୍ଟାଇପେଣ୍ଡ ବ୍ୟତୀତ ଅନ୍ୟ ସ୍ୱତନ୍ତ୍ର ଆକର୍ଷଣୀୟ ସୁବିଧାର ବ୍ୟବସ୍ଥା କରାଯିବା ଉଚିତ ।

ବିଦ୍ୟାଳୟର ଛୁଟି ସ୍ଥାନୀୟ ପର୍ବପର୍ବାଣୀ ଅନୁଯାୟୀ ହେବା ଉଚିତ । ସମସ୍ତ ବିଦ୍ୟାଳୟ ପାଇଁ ଏକ ପ୍ରକାରର ଛୁଟି ତାଲିକା ପିଲାମାନଙ୍କର ବିଦ୍ୟାଳୟରେ ଉପସ୍ଥାନ ଉପରେ କୁପ୍ରଭାବ ପକାଇଥାଏ ।

ଆବାସିକ ବିଦ୍ୟାଳୟମାନଙ୍କରେ ସ୍ଥାନ ସଂଖ୍ୟା ବଢ଼ାଯାଇ ବିଦ୍ୟାଳୟରେ ଆବଶ୍ୟକ ସ୍ଥଳେ ସିଫଟ୍ ସିଷ୍ଟମ ପ୍ରଚଳନ କରାଗଲେ ସୁବିଧା ହେବ । କାରଣ ଅଧିକ ଆବଶ୍ୟକତା ଥିବାରୁ ଆଉ ଗୋଟିଏ ବିଦ୍ୟାଳୟ ସ୍ଥାପନ ଅପେକ୍ଷା ସିଫ୍ଟ ସିଷ୍ଟମରେ ଅପେକ୍ଷାକୃତ କମ ଖର୍ଚ୍ଚ ହେବ ।

ଶିକ୍ଷକ ଓ ଛାତ୍ର ଅନୁପାତ ୧:୨୦ ରଖାଯିବା ବାଞ୍ଛନୀୟ । କାରଣ ପିଲା ସଂଖ୍ୟା ଏହାଠାରୁ ଅଧିକ ହେବାରୁ ଶିକ୍ଷକ ପ୍ରତ୍ୟେକ ଛାତ୍ରପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବାକୁ ଉପଯୁକ୍ତ ସମୟ ପାଉ ନାହାନ୍ତି । ତଦୁପରି ଅଭିଭାବକମାନଙ୍କର ପିଲାମାନଙ୍କ ପାଇଁ ଘରୋଇ ଟିଉସନ ପାଇଁ ଅର୍ଥର ଘୋର ଅଭାବ । ଛାତ୍ର ଶ୍ରେଣୀକକ୍ଷରେ ଯାହା ଜ୍ଞାନ ଅର୍ଜନ କରେ, ଅନ୍ୟ ସମୟରେ ତା' ପାଇଁ ସୁବିଧା ନ ଥାଏ ।

ଅନ୍ୟଥା ପ୍ରତ୍ୟେକ ଛାତ୍ର ଛାତ୍ରୀପାଇଁ ବିଦ୍ୟାଳୟରେ ବିଦ୍ୟାଳୟ ସମୟ ବାହାରେ ସରକାରୀ ଟିଉସନର ବ୍ୟବସ୍ଥା ରହିବା ଉଚିତ । ଯେଉଁ ବିଷୟରେ ଛାତ୍ରମାନେ ଉଲ୍ଲେଖ ଯୋଗ୍ୟ କୃତିତ୍ୱ ଦେଖାଇବେ ସେହି ବିଷୟର ଶିକ୍ଷକମାନଙ୍କୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ନିୟମିତ ଦିଆଯିବା ଉଚିତ । ତେବେ ଶିକ୍ଷକ ମଧ୍ୟ ସେ କାର୍ଯ୍ୟ ପାଇଁ ଉତ୍ସାହିତ ହେବେ । ଶିକ୍ଷକମାନଙ୍କ ମନରେ ଧାରଣା ରହିବା ଉଚିତ ନୁହେଁ ଯେ ତାର ଏହି କଷ୍ଟାର୍ଜିତ ଧନ ବାଟମାରଣା ହୋଇଯିବ ।

ଯେଉଁ ଶିକ୍ଷକ ଆଦିବାସୀ ଅଞ୍ଚଳମାନଙ୍କରେ କାର୍ଯ୍ୟ କରିବେ ସେମାନେ ସାଧୁ, କର୍ତ୍ତବ୍ୟନିଷ୍ଠ, ଉଚ୍ଚ ଗୁଣ ସମ୍ପନ୍ନ ହେବା ଉଚିତ । ସେମାନଙ୍କର ସେବା ମନୋଭାବ ଥିବା ଆବଶ୍ୟକ । ସେମାନେ ବିଶ୍ୱବିଦ୍ୟାଳୟର କୃତୀଛାତ୍ର ହୋଇଥିବା ଆବଶ୍ୟକ । ଯିଏ ଏମନ୍ତ କାର୍ଯ୍ୟପାଇଁ ଅନୁପଯୁକ୍ତ ସେ ଶିକ୍ଷକତା ପାଇଁ ଉପଯୁକ୍ତ । ଏଭଳି ଧାରଣା ଦୂର କରିବା ଉଚିତ ।

ଅଗମ୍ୟ ଅଞ୍ଚଳରେ ଗୃହଠାରୁ ବହୁ ଦୂରରେ ଯେଉଁ ପ୍ରାଥମିକ ଶିକ୍ଷକମାନେ କାର୍ଯ୍ୟ କରୁଛନ୍ତି, ସେମାନଙ୍କ ପାଇଁ "ପରିବାର ଭତ୍ତା" ଦିଆଯିବା ଉଚିତ । ତାହା ହେଲେ ସେମାନେ ବାରମ୍ବାର ବିଦ୍ୟାଳୟରୁ ଅନୁପସ୍ଥିତ ରହିବା ଦିଗରେ ସ୍ୱତଃ ଆଗ୍ରହାନ୍ୱିତ ହେବେ ନାହିଁ । ଅଗମ୍ୟ ଅଞ୍ଚଳରେ ଥିବାରୁ ସ୍ୱଳ୍ପ ବେତନରେ ରହିବା କଷ୍ଟସାଧ୍ୟ ଓ ପରିବାର ସେଠାରେ ରଖିବା ମଧ୍ୟ ବ୍ୟୟ ବହୁଳ । ଯଥେଷ୍ଟ ପରିବାର ଭତ୍ତା ପାଇଲେ ସେମାନେ ନିଜ ପରିବାରକୁ ପାଖରେ ରଖିବାକୁ ବାଧ୍ୟ ହେବେ ଓ ନିଜ ଗ୍ରାମକୁ ବାରମ୍ବାର ଯିବାର ପ୍ରବୃତ୍ତି କମିଯିବ । ଅବଶ୍ୟ ଏହି ଭତ୍ତା ଦେବା ପୂର୍ବରୁ ଠିକ୍ ଭାବେ ଯାଞ୍ଚ ହେବା ଉଚିତ ଓ ସାଧୁ, କର୍ତ୍ତବ୍ୟନିଷ୍ଠ କର୍ମଚାରୀଙ୍କ ଦ୍ୱାରା ଏହା କରାଯିବା ଉଚିତ । ଯେପରି କି ଏହାର ଅପବ୍ୟବହାର ନ ହୁଏ । ସର୍ବୋପରି ପ୍ରାଥମିକ ଶିକ୍ଷକଙ୍କ ଶିକ୍ଷାଗତ ଯୋଗ୍ୟତା ତାଲିମପ୍ରାପ୍ତ ଇଣ୍ଟରମିଡିଏଟ ହେବା ଆବଶ୍ୟକ ଏହା ସମ୍ଭବ ନ ହେଲେ ଗଣିତ ଓ ବିଜ୍ଞାନ କ୍ଷେତ୍ରରେ ପ୍ରତି ବିଦ୍ୟାଳୟ ପାଇଁ ଜଣେ ତାଲିମ ପ୍ରାପ୍ତ ଇଣ୍ଟରମିଡିଏଟ ବିଜ୍ଞାନ ଶିକ୍ଷକ ରହିବା ବର୍ତ୍ତମାନର ପାଠ୍ୟ ଖସଡ଼ା ଦୃଷ୍ଟିରୁ ବାଞ୍ଛନୀୟ ।

ସାଧାରଣତଃ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ପ୍ରତି ହେୟ ଭାବ ଦୂର କରିବା ପାଇଁ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ନିଆଯିବା ଉଚିତ । ବହୁ ବ୍ୟକ୍ତିଙ୍କ ଧାରଣା ଯେ ଏହି ବିଭାଗରେ ଶିକ୍ଷକତା କଲେ ଘରେ ରହି ଦରମା ମିଳେ । ପିଲାମାନଙ୍କ ଷ୍ଟାଇପେଣ୍ଡ ନେଇ ବହୁ ପ୍ରକାରର ଅଭିଯୋଗ ବାରମ୍ବାର ହୁଏ । ଉପରିସ୍ଥ କର୍ମଚାରୀଙ୍କୁ ସନ୍ତୁଷ୍ଟ କଲେ ସବୁ ସମ୍ଭବ । ଏ ଭଳି ଧାରଣା ଦୂରୀଭୂତ ନ ହେଲେ ଯେଉଁ ମହତ୍ ଚେଷ୍ଟା ଚାଲିଛି ତାହା ଧୂଳିସାତ୍ ହୋଇଯିବ ।

ପ୍ରାଥମିକ ବିଦ୍ୟାଳୟରେ ପିଲାମାନଙ୍କୁ ଯେଉଁ ମାଗଣା ଖାଦ୍ୟ ଯୋଗାଣ ବ୍ୟବସ୍ଥା ଅଛି, ତାହା ସ୍ୱାଗତ ଯୋଗ୍ୟ । କିନ୍ତୁ ଏହି ବ୍ୟବସ୍ଥା ସୁଷ୍ଠୁ ଭାବେ ପରିଚାଳିତ ନ ହେବାର ବହୁ ଅଭିଯୋଗ ମିଳେ । ବହୁ ସ୍ଥାନରେ ଅଭିଯୋଗ ହୋଇଛି ଯେ, ଖାଦ୍ୟ ପିଲାମାନଙ୍କୁ ମିଳେ ନାହିଁ ବା ମିଳିଲେ ବି ତାହା ଖାଦ୍ୟ ଉପଯୋଗୀ ହୋଇ ନ ଥାଏ । ଏ ଭଳି ଅଭିଯୋଗ ମଧ୍ୟ ମିଳିଛି ଯେ, ବିଦ୍ୟାଳୟରେ କେବଳ ଖାଦ୍ୟ ମିଳେ କିନ୍ତୁ ବିଦ୍ୟା ମିଳେ ନାହିଁ । ଶିକ୍ଷକଙ୍କର ଦାୟିତ୍ୱ ପିଲାମାନଙ୍କୁ ଖାଦ୍ୟ ଯୋଗାଇ ଦେଇ ରନ୍ଧନ ଶିଖାଇବା । କାରଣ ଶିକ୍ଷକ ଭାବନ୍ତି ଯେ ଆଦିବାସୀ ପିଲାଙ୍କ ଦ୍ୱାରା ପାଠ ପଢ଼ା ହେବ ନାହିଁ । ଏ ମନ ବୃତ୍ତିର ପରିବର୍ତ୍ତନ ହେବା ବିଧେୟ ।

ସବୁଠାରୁ ବଡ଼ କଥା ହେଉଛି ଯେଉଁ ଶିକ୍ଷକ ଆଦିବାସୀ-ମାନଙ୍କ ମଧ୍ୟରେ କାର୍ଯ୍ୟ କରିବେ, ସେମାନଙ୍କର ମନୋଭାବ ଆଦିବାସୀମାନଙ୍କ ପ୍ରତି ଉପଯୁକ୍ତ ଭାବେ ସହାୟକ ହେବା ଆବଶ୍ୟକ । ଗୋଟିଏ ବିଦ୍ୟାଳୟରେ ଜଣେ ଶିକ୍ଷକ ଯାହାଙ୍କର ଦେହର ବର୍ଣ୍ଣ ଶ୍ୟାମଳ ଗୋଟିଏ କୃଷ୍ଣ ବର୍ଣ୍ଣର କୁଷ୍ଠ ଆଦିବାସୀ ବାଳକକୁ ସହଜରେ ଦୁଇ ଚାପୁଡ଼ା ଦେଇ ରାଗି ପରେ ନିଜ ହାତକୁ ଟେବୁଲରେ ଭଲ ଭାବରେ ଘଷିଲେ । ଏହାର ଉଦ୍ଦେଶ୍ୟ ଏହି ଯେ କୃଷ୍ଣ ବର୍ଣ୍ଣର ବାଳକର ଚମଡ଼ାରୁ କିଛି କଳାରଙ୍ଗ ତାଙ୍କ ହାତ ପାପୁଲିରେ ଲାଗି ଯାଇଥିବ ଓ ତାକୁ ସଫା କରିବା ନିହାତି ଦରକାର । ଯଦି ଏ ଭଳି ମନୋଭାବାପନ୍ନ ଶିକ୍ଷକ କୋମଳ ମତି ବାଳକର ଶିକ୍ଷା ଦାୟିତ୍ୱରେ ରହନ୍ତି ତେବେ ଶିକ୍ଷାର ଗତି କେଉଁ ଆଡ଼କୁ ହେବ ତାହା ସହଜରେ ଅନୁମେୟ ।

ସର୍ବୋତ୍ତମ ବ୍ୟବସ୍ଥା ଏହି ଯେ ପ୍ରାଥମିକ ଶିକ୍ଷକ ସର୍ବଦା ସେହି ସମ୍ପ୍ରଦାୟ ମଧ୍ୟରୁ ନିଯୁକ୍ତି ହେବା ଉଚିତ । ତଦ ଅଭାବେ ଅନ୍ୟ ଶିକ୍ଷକମାନେ ସ୍ଥାନୀୟ ଭାଷା, ସଂସ୍କୃତି ଓ ଲୋକ କଥା ସହ ନିବିଡ଼ ଭାବେ ପରିଚିତ ହେବା ନିହାତି ଆବଶ୍ୟକ । ତା' ନ ହେଲେ

ଆଦିବାସୀ ଶିଶୁ ଶିକ୍ଷକଙ୍କୁ ଜଣେ ବିଦେଶାଗତ ଅତିଥି ବୋଲି ଭାବି ଶଙ୍କାକୁଳ ହୁଏ । ଶିଶୁକୁ ଆକୃଷ୍ଟ କରିବା ପାଇଁ ତା' ଭାଷାରେ ତା ସହିତ ବାର୍ତ୍ତା ବିନିମୟ ନିଶ୍ଚିତ ଭାବେ ଆବଶ୍ୟକ । ତେଣୁ ପ୍ରାଥମିକ ସ୍ତରରେ ଶିଶୁ ତା' ନିଜ ଭାଷା ମାଧ୍ୟମରେ ଶିକ୍ଷା ପାଇବା ବାଞ୍ଛନୀୟ । କ୍ରମେ କ୍ରମେ ତାକୁ ଓଡ଼ିଆ ଭାଷା ସହ ପରିଚିତ କରାଇଲେ ବିଦ୍ୟାଳୟକୁ ଆଦିବାସୀ ଶିଶୁ ବନ୍ଦୀଶାଳା ଓ ଶିକ୍ଷକଙ୍କୁ ଜେଲର ନ ଭାବି ତା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହେବାକୁ ଚେଷ୍ଟା କରିବ । ଏହା ଦ୍ୱାରା ଆଦିବାସୀ କିଶୋର ଅଣ-ଆଦିବାସୀ କିଶୋରମାନଙ୍କ ସହ ସହଜରେ ମିଶିବା ସମ୍ଭବ ହେବ । ଯେଉଁ ପ୍ରାଥମିକ ଶିକ୍ଷକ ଆଦିବାସୀ ସମ୍ପ୍ରଦାୟର ନିକଟବର୍ତ୍ତୀ ହୁଏ ତାର ଚାକିରୀ କାଳ ସେହି ଅଞ୍ଚଳରେ ସୀମିତ ହେବା ଉଚିତ । ସ୍ଥାନୀୟ ଭାଷା, ଆଚାର ବ୍ୟବହାର ସହ ପରିଚିତ ନ ଥିବା ଶିକ୍ଷକ ନିଯୁକ୍ତି ସେ ଅଞ୍ଚଳ ପ୍ରତି ସହାୟକ ନ ହୋଇ ବରଂ କ୍ଷତି କାରକ ହୋଇଥାଏ । ଏ ବ୍ୟବସ୍ଥା ପାଇଁ ଶିକ୍ଷକଙ୍କୁ ଉପଯୁକ୍ତ ସଂଖ୍ୟାରେ ତାଲିମ ଦିଆଯିବା ଉଚିତ ।

ଆବାସିକ ବିଦ୍ୟାଳୟମାନଙ୍କର ପ୍ରକୃତି ଯତ୍ନ ସର୍ବାଗ୍ରେ ଆବଶ୍ୟକ । ବହୁ ଆବାସିକ ବିଦ୍ୟାଳୟରେ ଛାତ୍ର ଛାତ୍ରୀଙ୍କ ପାଇଁ ସର୍ବନିମ୍ନ ସୁବିଧା ମଧ୍ୟ ନାହିଁ । ଗୃହଗୁଡ଼ିକୁ ଠିକ୍ ଭାବେ ମରାମତି ହେବା ଦରକାର । ରହିବା, ଖାଇବା, ପଢ଼ାଗୃହ, ଆଲୁଅ ବ୍ୟବସ୍ଥା, ଡାକ୍ତରୀ ଚିକିତ୍ସା ବ୍ୟବସ୍ଥା ଆବଶ୍ୟକ ଅନୁଯାୟୀ ରହିବା ଦରକାର । ବହୁ ସଂଖ୍ୟକ ଛାତ୍ର ଛାତ୍ରୀଙ୍କୁ ନେଇ ଡାକ୍ତରୀ ଚିକିତ୍ସା ଅଭାବରେ ଭଗବାନଙ୍କ ଉପରେ ଭରସା କରି ଶିକ୍ଷକ-ବୃନ୍ଦ ବହୁ ସମୟରେ ଦୁଶ୍ଚିନ୍ତାରେ ରହିବାର ଦେଖା ଯାଇଛି । କେତେକ କ୍ଷେତ୍ରରେ ଶିକ୍ଷକମାନଙ୍କ ମଧ୍ୟରୁ କେହି କେହି ହୋମିଓପାଥି ଚିକିତ୍ସା କରିବାର ବହୁ ନଜିର ରହିଛି ।

ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ଦ୍ୱାରା ପରିଚାଳିତ ବିଦ୍ୟାଳୟଗୁଡ଼ିକରେ ବିଦ୍ୟାଳୟ ପାଠପଢ଼ା ତଦାରଖ କରିବା ପାଇଁ ନିର୍ଦ୍ଦିଷ୍ଟ ପରିଦର୍ଶକଙ୍କର ବ୍ୟବସ୍ଥା ନାହିଁ । ଶିକ୍ଷା ବିଭାଗୀୟ ବିଦ୍ୟାଳୟ ପରିଦର୍ଶକମାନଙ୍କୁ ଏହି ଦାୟିତ୍ୱ ଦିଆଯାଇଛି । କିନ୍ତୁ ସେମାନେ ତାଙ୍କ ଦାୟିତ୍ୱ ସହ ଏହି ଅଧିକ ଦାୟିତ୍ୱ ତୁଲାଇବାକୁ ଆଦୌ ସମୟ ପାଆନ୍ତି ନାହିଁ । ତେଣୁ କାର୍ଯ୍ୟତଃ ପରିଦର୍ଶନ କାର୍ଯ୍ୟ ଏହି ବିଦ୍ୟାଳୟମାନଙ୍କରେ ଅବହେଳିତ ହୋଇଯାଏ । ଏହି କାର୍ଯ୍ୟ ପାଇଁ ସେହି ବିଭାଗ ତରଫରୁ ଉପଯୁକ୍ତ ତାଲିମ ପ୍ରାପ୍ତ ଶିକ୍ଷାବିତ୍ ନିଯୁକ୍ତ ହେବା ବାଞ୍ଛନୀୟ ।

ଏହି ବିଭାଗୀୟ ବିଦ୍ୟାଳୟର ହଷ୍ଟେଲଗୁଡ଼ିକରେ ନିୟମିତ ସୁପରିଣ୍ଟେଣ୍ଡେଣ୍ଟ ବା ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ସାଧାରଣ ଶିକ୍ଷା ବିଭାଗ ବିଦ୍ୟାଳୟ ଭଳି ନାହାନ୍ତି । ସେଥିପାଇଁ ପ୍ରତି ୧୨ ମାସ ଅନ୍ତରରେ ସୁପରିଣ୍ଟେଣ୍ଡେଣ୍ଟ ବଦଳୁ ଥାଆନ୍ତି । ସେମାନଙ୍କର ଏହି କାର୍ଯ୍ୟ ପାଇଁ କୌଣସି ଅତିରିକ୍ତ ଆର୍ଥିକ ବ୍ୟବସ୍ଥା ମଧ୍ୟ ନାହିଁ । କିନ୍ତୁ ସୁପରିଣ୍ଟେଣ୍ଡେଣ୍ଟ ଯଦି ୧୨ ବର୍ଷ ପର୍ଯ୍ୟନ୍ତ ନିୟମିତ ରୂପେ ଶିକ୍ଷା ବିଭାଗ ବିଦ୍ୟାଳୟ ଭଳି ରହନ୍ତି ତେବେ ସେମାନଙ୍କର ସେ କାର୍ଯ୍ୟ ପାଇଁ ଅଧିକ ସ୍ପୃହା ଆସିବ ଓ କାର୍ଯ୍ୟ ଠିକ୍ ଭାବେ ତଦାରଖ ହୋଇ ପାରିବ । ଯେନତେନ ପ୍ରକାରେଣ ୧୨ ମାସ କାଟି ଦେବା ପାଇଁ ସେମାନେ ଚେଷ୍ଟିତ ହେବେ ନାହିଁ ।

ନାରୀ ଶିକ୍ଷାର ପ୍ରସାର ପାଇଁ ଅଧିକ କନ୍ୟାଶ୍ରମ ଓ ବାଳିକା ହାଇସ୍କୁଲ ଆଦିବାସୀ ବହୁଳ ଅଞ୍ଚଳରେ ପ୍ରତିଷ୍ଠା ହେବା ଆବଶ୍ୟକ । କେତେକ ସ୍ୱତନ୍ତ୍ର ବାଳିକା ବିଦ୍ୟାଳୟ ସମସ୍ତ ଆଧୁନିକ ପାଠ୍ୟ ବ୍ୟବସ୍ଥା ସହ ରାଜ୍ୟର ପ୍ରଧାନ ପ୍ରଧାନ ସ୍ଥାନମାନଙ୍କରେ ସ୍ଥାପନ କରାଯିବା ଆବଶ୍ୟକ ଏବଂ ଏଥିପାଇଁ ଆଦିବାସୀ ଅଭିଭାବକଙ୍କୁ ପ୍ରଭାବିତ କରି ସେମାନଙ୍କ କନ୍ୟାମାନଙ୍କୁ ସେ ବିଦ୍ୟାଳୟମାନଙ୍କରେ ଗ୍ରହଣ କରାଯିବା ଆବଶ୍ୟକ । ସେହି ବିଦ୍ୟାଳୟମାନଙ୍କରେ ଅଳ୍ପ କେତେକ ସ୍ଥାନ ଅଣ-ଆଦିବାସୀ ଦରିଦ୍ର ଶ୍ରେଣୀର ଛାତ୍ରୀମାନଙ୍କ ପାଇଁ ସୁରକ୍ଷିତ ହେବା ଆବଶ୍ୟକ । ଏହା ଦ୍ୱାରା ସେମାନଙ୍କର ସାମାଜିକ ସ୍ଥିତି ଓ ସାମାଜିକ ସଂପର୍କରେ ଉନ୍ନତି ଘଟିବ । ସେମାନଙ୍କ ମଧ୍ୟରୁ ଜାତିଆଣ ମନୋଭାବ ଦୂର ହେବା ସଙ୍ଗେ ସଙ୍ଗେ ସେମାନେ ପରସ୍ପରକୁ ସହଜରେ ନିବିଡ଼ ଭାବେ ଜାଣି ପାରିବେ ।

ବିଭିନ୍ନ ପାଠ୍ୟ ପୁସ୍ତକ ଓ ପାଠ୍ୟୋପକରଣ ଠିକ୍ ସମୟରେ ପିଲମାନଙ୍କ ନିକଟରେ ପହଞ୍ଚିବା ଆବଶ୍ୟକ । ଏଥିପାଇଁ ଉର୍ଦ୍ଦିଷ୍ଟ ବିଭାଗ ମାଧ୍ୟମିକ ଶିକ୍ଷାବୋର୍ଡ ସହ ସଂପର୍କ ସ୍ଥାପନ କରି ଆଗୁଆ ପଦକ୍ଷେପ ନେବା ଉଚିତ୍ ।

ଯେଉଁ ଶିକ୍ଷକମାନେ ଆଦିବାସୀ ବହୁଳ ଅଞ୍ଚଳମାନଙ୍କରେ କାର୍ଯ୍ୟ କରନ୍ତି ସେମାନଙ୍କଠାରୁ ବର୍ତ୍ତମାନ ସମାଜ ବହୁତ କିଛି ଆଶା କରେ । ତେଣୁ ସେମାନଙ୍କୁ ଅନ୍ୟ ଅଞ୍ଚଳର ଶିକ୍ଷକମାନଙ୍କ ସହ ତୁଳନା କରାଯିବା ଉଚିତ ନୁହେଁ । ସେମାନଙ୍କୁ ଯଥେଷ୍ଟ ଉଚ୍ଚ ହାରରେ ଦରମା ଦିଆଯିବା ଆବଶ୍ୟକ । ତେବେ ଯାଇ ବିଶ୍ୱବିଦ୍ୟାଳୟରୁ ଉନ୍ନତ ମାନର ଡ଼ିଗ୍ରୀଧାରୀମାନେ ଏଥିପାଇଁ ଆଗ୍ରହ ପ୍ରକାଶ କରିବେ । ଆଦିବାସୀ ମଙ୍ଗଳ ବିଭାଗୀୟ ବିଦ୍ୟାଳୟମାନଙ୍କରେ ଶିକ୍ଷକମାନଙ୍କ ମଧ୍ୟରୁ ଉପକୂଳବର୍ତ୍ତୀ ଅଞ୍ଚଳର ଶିକ୍ଷକମାନଙ୍କ ସଂଖ୍ୟା ବହୁତ ବେଶୀ । ତେଣୁ ସେମାନଙ୍କୁ ସେ ଅଞ୍ଚଳରେ ରହିବାକୁ ଉତ୍ସାହିତ କରିବା ପାଇଁ ବିଭିନ୍ନ ଉପଯୁକ୍ତ ଆର୍ଥିକ ବ୍ୟବସ୍ଥା କରିବା ଉଚିତ । ଅନ୍ୟ ଅଞ୍ଚଳରେ କାର୍ଯ୍ୟ କରୁଥିବା ସରକାରୀ ଶିକ୍ଷକମାନଙ୍କୁ ସେମାନଙ୍କ ଚାକିରୀକାଳ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଆଦିବାସୀ ଅଞ୍ଚଳକୁ ପଠାଯିବା ଆବଶ୍ୟକ ଏବଂ ଯେଉଁମାନେ ଆଦିବାସୀ ଅଞ୍ଚଳରେ ବହୁଦିନ ଧରି କାର୍ଯ୍ୟ କଲେଣି ସେମାନଙ୍କୁ ଅନ୍ୟ ଅଞ୍ଚଳକୁ ଯିବା ପାଇଁ ସୁଯୋଗ ଦେବା ଆବଶ୍ୟକ । ଆଦିବାସୀ ଅଞ୍ଚଳର ଶିକ୍ଷକମାନଙ୍କ ଚାକିରୀକାଳ ମଧ୍ୟରେ ବିଭିନ୍ନ ପ୍ରକାରର ଆଧୁନିକ ତାଲିମ ବ୍ୟବସ୍ଥା ଓ ଉଚ୍ଚତର ପାଠ୍ୟକ୍ରମ ସହ ପରିଚିତ କରାଯିବା ଆବଶ୍ୟକ । ଯେହେତୁ ସେମାନଙ୍କର ପିଲାମାନଙ୍କର ଉଚ୍ଚଶିକ୍ଷା ସକାଶେ ଅନ୍ୟ ବ୍ୟବସ୍ଥା ସେ ଅଞ୍ଚଳରେ ନାହିଁ । ତେଣୁ ସେମାନଙ୍କ ପାଇଁ ବଡ଼ ବଡ଼ ମହାବିଦ୍ୟାଳୟମାନଙ୍କରେ ସ୍ଥାନ ସଂରକ୍ଷଣ ଓ ଆର୍ଥିକ ସାହାଯ୍ୟ ଦାନ ଆବଶ୍ୟକ । ତେବେ ଯାଇ ସେମାନେ ସେମାନଙ୍କ ପିଲାମାନଙ୍କର ଭବିଷ୍ୟତ ଉନ୍ନତି ପାଇଁ ବ୍ୟଥିତ ହୋଇ ବାରମ୍ବାର କର୍ତ୍ତୃପକ୍ଷଙ୍କୁ ହଇରାଣ କରିବାର ଚେଷ୍ଟାରୁ ବିରତ ରହିବେ ବୋଲି ଆଶା । ଅବଶ୍ୟ ବର୍ତ୍ତମାନ କର୍ତ୍ତୃପକ୍ଷ ଶିକ୍ଷକ-ମାନଙ୍କର ବଦଳି ସଂପର୍କରେ ଯେପରି କାର୍ଯ୍ୟାନୁଷ୍ଠାନ କରୁଛନ୍ତି, ତାହା ଉତ୍ସାହପ୍ରଦ ଓ ସ୍ୱାଗତ ଯୋଗ୍ୟ ।

ଆଦିବାସୀମାନଙ୍କର ଶିକ୍ଷାର ଉନ୍ନତି କଳ୍ପେ ଉପରୋକ୍ତ ପଦକ୍ଷେପ ବ୍ୟତୀତ ଏହାର ଉତ୍ତରୋତ୍ତର ଉନ୍ନତି ଓ ଦିଗଦର୍ଶନ ପାଇଁ ଗବେଷଣାଗାର ସ୍ଥାନକୁ ଅବହେଳା କରା ଯାଇ ନ ପାରେ । ବିଭିନ୍ନ ପ୍ରକାରର ସ୍ୱତନ୍ତ୍ର "ଫେଲୋସିପ୍" ର ବ୍ୟବସ୍ଥା ଆଦିବାସୀ ଗବେଷଣା ସଂସ୍ଥା ତରଫରୁ କରାଯିବା ଉଚିତ । ଆଦିବାସୀ-ମାନଙ୍କର ଶିକ୍ଷାଗତ, ସାମାଜିକ ଓ ଆର୍ଥିକ ଅଧୋଗତି ଉପରେ

ଅଧିକ ଗବେଷଣା କରି ସେଗୁଡ଼ିକର ପୂର୍ଣ୍ଣ ନିରାକରଣ ପାଇଁ ଅଧିକ ଫଳପ୍ରଦ ପନ୍ଥା ଗ୍ରହଣ କରାଯିବା ଉଚିତ । ଆଦିବାସୀ ବହୁଳ ଅଞ୍ଚଳରେ ଶିକ୍ଷକମାନଙ୍କର ଅଭାବ ଅସୁବିଧା ସେମାନଙ୍କର ମନୋଭାବ ଆଦିବାସୀଙ୍କ ପ୍ରତି ମନୋବୃତ୍ତି, ସେମାନଙ୍କର କାର୍ଯ୍ୟ ପ୍ରତି ଆଗ୍ରହ ଇତ୍ୟାଦି ସମ୍ବନ୍ଧରେ ଗବେଷଣା କରାଯାଇ ବିଭିନ୍ନ ପ୍ରକାର ତ୍ରୁଟି ସଂଶୋଧନ ପାଇଁ ଚେଷ୍ଟା କରାଯିବା ଉଚିତ । ନ ହେଲେ ଆମେ ଯେଉଁ ତିମିରେ ସେହି ତିମିରେ ରହିବା, ଆମର ଏହି ମହତ ଚେଷ୍ଟାର ଫଳ ଆମେ ଭୋଗ କରି ପାରିବା ନାହିଁ ।

ସର୍ବୋପରି ଆଦିବାସୀମାନଙ୍କ ଅବସ୍ଥାର ଉନ୍ନତି ସକାଶେ ଠକ୍କରବାପା, କାକା କାଲେକର ପ୍ରଭୃତି ମନିଷୀଗଣଙ୍କର ଅବଦାନ ଅବସ୍ମରଣୀୟ । ସେହି ମନିଷୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଆଦିମଜାତି ସେବକସଂଘ, ରାମକୃଷ୍ଣମିଶନ, ( Servants of India Society, Indian Council of Child Welfare, The Institute of Social Scienceର କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସାହ । ଏତଦ୍‌ବ୍ୟତୀତ ଆଦିବାସୀମାନଙ୍କ ମଧ୍ୟରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଅବଦାନକୁ ହେୟ ଦୃଷ୍ଟିରେ ଦେଖି ହେବ ନାହିଁ । ଆଦିବାସୀ ବହୁଳ ଜିଲ୍ଲାମାନଙ୍କ ମଧ୍ୟରେ ସୁନ୍ଦରଗଡ଼ ଜିଲ୍ଲାର ଶିକ୍ଷିତ ହାର ସବୁଠାରୁ ବେଶୀ ଏବଂ ସେଥିପାଇଁ ପ୍ରଧାନତଃ ସେହି ଖ୍ରୀଷ୍ଟିୟାନ ମିଶନାରୀ ଦାୟୀ । ଶିକ୍ଷା ସଙ୍ଗେ ସଙ୍ଗେ ପରିମାର୍ଜିତ ଆଚାର ବ୍ୟବହାର, ସଂସ୍କୃତିର ସଂସ୍କାର ସେହିମାନଙ୍କ ଯୋଗୁଁ ସମ୍ଭବ ହୋଇଛି । ସମାଜରେ ଓ ଉଚ୍ଚସରକାରୀ ଚାକିରୀରେ ପ୍ରତିଷ୍ଠିତ ଆଦିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ଖ୍ରୀଷ୍ଟିୟାନ । ଆଦିବାସୀମାନଙ୍କ ଉନ୍ନତି ସକାଶେ ମିଶନାରୀମାନଙ୍କର ଅକ୍ଳାନ୍ତ ଉଦ୍ୟମକୁ କେହି ଅସ୍ୱୀକାର କରି ପାରିବେ ନାହିଁ । ନିହାତି ଅଗମ୍ୟ ଅଞ୍ଚଳକୁ ମଧ୍ୟ ସେମାନେ ଯାଇ ଯେଉଁ ପ୍ରକାର ଜନମଙ୍ଗଳକର କାର୍ଯ୍ୟ କରିଛନ୍ତି ତାର ପଟାନ୍ତର ନାହିଁ । ଜଣେ ନିରୀହ ଆଦିବାସୀ ତାର Father (ପାଦ୍ରୀ) ଙ୍କ ପାଇଁ ଜୀବନ ପର୍ଯ୍ୟନ୍ତ ଉତ୍ସର୍ଗ କରିପାରେ । କିନ୍ତୁ ଏଥି ସଙ୍ଗେ ସଙ୍ଗେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର କାର୍ଯ୍ୟ ଦେଶର ସଂହତି ଓ ଭବିଷ୍ୟତ ଦୃଷ୍ଟିରୁ ସନ୍ଦେହ ମୁକ୍ତ ନୁହେଁ । ଥରେ ଜଣେ ଉଚ୍ଚବିଦ୍ୟାଳୟର ପ୍ରଧାନଶିକ୍ଷକଙ୍କୁ ଜଣେ ଶିକ୍ଷା ଗବେଷଣାକାରୀଙ୍କୁ ବିଦ୍ୟାଳୟ ଶିକ୍ଷା ସମ୍ବନ୍ଧୀୟ ବିଭିନ୍ନ ତଥ୍ୟ ଯୋଗାଇଥିବା ଯୋଗୁ 'Father'ଙ୍କୁ କୈଫିୟତ ଦେବାକୁ ପଡିଥିଲା । ଏଥିପାଇଁ ଅବଶ୍ୟ ଆମ ସମାଜ ବହୁ ପରିମାଣରେ ଦାୟୀ । ନାଗାଲେଣ୍ଡରେ ରେଭରେଣ୍ଡ ମାଇକେଲଙ୍କ ନାଟକର ଯେପରି ଆମ ରାଜ୍ୟରେ ପୁନରାବୃତ୍ତି ନହୁଏ ସେଥିପାଇଁ ଆମକୁ ସଦା ସତର୍କ ରହିବାକୁ ପଡିବ ଓ ତତ୍ ସଙ୍ଗେ ସଙ୍ଗେ ଆଦିବାସୀମାନଙ୍କ ପ୍ରତି ଯେଉଁ କର୍ତ୍ତବ୍ୟ ଯେଉଁମାନଙ୍କ ଉପରେ ନ୍ୟସ୍ତ ଅଛି, ତାହା ଠିକ୍ ଭାବେ ସଂପାଦନ କରିବାକୁ ପଡ଼ିବ ।

ପରିଶେଷରେ ଶିକ୍ଷିତ ଆଦିବାସୀ ଭାଇମାନଙ୍କୁ ଅନୁରୋଧ, ସେମାନେ ସେମାନଙ୍କର ଅଶିକ୍ଷିତ ଭାଇମାନଙ୍କ ପ୍ରତି ଦୟାଶୀଳ ହେବା ଉଚିତ । କେତେକ କ୍ଷେତ୍ରରେ ଏହାର ଅଭାବ ପରିଲକ୍ଷିତ ହୋଉଛି । ମୟୂରଭଞ୍ଜ ଜିଲ୍ଲାର ଏକ ଉଦାହରଣ ଏଠାରେ ଉଲ୍ଲେଖ କରାଯାଇ ପାରେ । ଗୋଟିଏ ଗ୍ରାମର ଏକ ଧନାଢ୍ୟ, ଶିକ୍ଷିତ ଆଦିବାସୀ ପରିବାର ସେମାନଙ୍କ ଗ୍ରାମରେ ଏକ ମାତ୍ର ପ୍ରାଥମିକ ବିଦ୍ୟାଳୟର ସୁପରିଚାଳନା ପାଇଁ ମଧ୍ୟ ଅସମର୍ଥ । ଅଥଚ ସେହି ପରିବାରରୁ ଇଞ୍ଜିନିୟର, ଓକିଲ ପ୍ରଭୃତି ବାହାରିଛନ୍ତି । ସେହି ବିଦ୍ୟାଳୟର ଶିକ୍ଷକ ଓ ଗ୍ରାମର କେତେକ ବ୍ୟକ୍ତିଙ୍କର ମଧ୍ୟ ମତ ଯେ ଯଦିଓ ସେହି ଶିକ୍ଷିତ ପରିବାର ମଧ୍ୟରୁ ଜଣେ ବିଦ୍ୟାଳୟ ପରିଚାଳନା କମିଟିର ସେକ୍ରେଟାରୀ, ତଥାପି ସେମାନେ କେବେହେଲେ ବିଦ୍ୟାଳୟ କାର୍ଯ୍ୟ ସମ୍ବନ୍ଧରେ ଆଗ୍ରହୀ ହୁଅନ୍ତି ନାହିଁ କିମ୍ବା ସେମାନଙ୍କର ଜାତି ଭାଇମାନଙ୍କର ପାଠ ପଢା ପ୍ରତି ଆଗ୍ରହ ପ୍ରକାଶ କରନ୍ତି ନାହିଁ । ଏହିଭଳି ବିଭିନ୍ନ ପ୍ରକାର ଦୃଷ୍ଟାନ୍ତ ଆଦିବାସୀ ସମାଜ ମଧ୍ୟରେ ବିରଳ ନୁହେଁ ଏବଂ ଏହି ପ୍ରକାର ଧାରଣା ଯେ ସେମାନଙ୍କ ମଧ୍ୟରେ ଅଛି ତାହା ସର୍ବଜନ ବିଦିତ । ଜନୈକ ପୂର୍ବତନ ଆଦିବାସୀ ଗ୍ରାମ ମଙ୍ଗଳ ମନ୍ତ୍ରୀ ମଧ୍ୟ ଏହା ସ୍ୱୀକାର କରିଛନ୍ତି । ଶିକ୍ଷିତ ଆଦିବାସୀ ଭାଇମାନେ, (ଅବଶ୍ୟ ସମସ୍ତେ ନୁହଁନ୍ତି), ଯଦି ନିଜର ଦରିଦ୍ର ଅଶିକ୍ଷିତ ଭାଇମାନଙ୍କ ପ୍ରତି ସହାନୁଭୂତିଶୀଳ ହେବେ ନାହିଁ ତେବେ ସେମାନଙ୍କର ଦ୍ରୁତ ଉନ୍ନତି ସମ୍ଭବ ହେବ ନାହିଁ । କାରଣ ଆମେ ନିଜକୁ ସାହାଯ୍ୟ ନ କଲେ ଆମକୁ କେହି ଉପରକୁ ଉଠାଇ ପାରିବ ନାହିଁ ।

ନାଗେଶ୍ୱର ଟାଙ୍ଗୀ,
ଭୁବନେଶ୍ୱର—୨



ବୌଦ୍ଧ ଧର୍ମ ଓ ଜାତୀୟ ସଂସ୍କୃତି ଆଲୋଚନା ଚକ୍ର ଉଦ୍‌ଘାଟନ ଉତ୍ସବରେ ।

# ଦୁଃଖ ପରେ ସୁଖ

ଶ୍ରୀ କିଶୋର ଚନ୍ଦ୍ର ବଳ

ତାଳଚେର ବ୍ଲକ ଅନ୍ତର୍ଗତ କନ୍ଦାବାହାଲ ଗ୍ରାମରେ ଗୋଟିଏ ଦରିଦ୍ର ବ୍ରାହ୍ମଣ ପରିବାରରେ ଜଗଦାନନ୍ଦର ଜନ୍ମ । ପିତାଙ୍କର ନାମ ଶ୍ରୀ ଗୋବିନ୍ଦ ଚନ୍ଦ୍ର ନନ୍ଦ । ବାଲ୍ୟାବସ୍ଥାରୁ ଦାରିଦ୍ର୍ୟର କଶାଘାତରେ ନିଷ୍ପେଷିତ ହୋଇ ଜଗଦାନନ୍ଦର ପ୍ରାଥମିକ ଶିକ୍ଷା ବେଳେ ବସ୍ତାନୀରେ ଡୋରି ବନ୍ଧା ହୋଇଥିଲା । ପିତାମାତାଙ୍କର ସ୍ୱଳ୍ପ ଆୟରେ ୪ ଜଣ ପରିବାର ଚଳିବା ବଡ଼ କଷ୍ଟ । ଜମିବାଡ଼ି କହିଲେ ଟିମାଟେ ନାହିଁ । କେବଳ ବାସଗୃହ ଡିହ ଖଣ୍ଡିକ ।

ଜଗଦାନନ୍ଦ ଅନ୍ୟ ଉପାୟ ନଦେଖି ୧୨ ବର୍ଷ ବୟସରୁ ପର ପାଖରେ ମୂଲ ଲାଗି ଚଳିବାକୁ ନିଜର ଜୀବିକା ଭାବେ ବାଛିନେଲା । ଏକା ଥିବା ସମୟରେ ସ୍ୱଳ୍ପ ଆୟରେ ପିତାମାତା ଓ ଭଉଣୀଙ୍କ ସହ ଦୁଃଖେ କଷ୍ଟେ ଚଳି ଯାଉଥିଲା କିନ୍ତୁ ବିବାହ ହେବାପରେ ଆସ୍ତେ ଆସ୍ତେ ପରିବାର ବୃଦ୍ଧିପାଇବାକୁ ଲାଗିଲା । ସ୍ତ୍ରୀ, ଦୁଇଟି ସନ୍ତାନ, ପିତାମାତା ଓ ନିଜକୁ ନେଇ ଛଅଜଣ ବିଶିଷ୍ଟ ପରିବାରକୁ ମୂଲିଆ କାମ କରି ସ୍ୱଳ୍ପ ଆୟରେ ଚଳାଇବା ଜଗଦାନନ୍ଦ ପକ୍ଷେ ଅସମ୍ଭବ ହୋଇପଡ଼ିଲା ।

ଏପରି କି ଦିନେ ଦିନେ ଓଳିଏ ଖାଇଲେ ଆଉ ଓଳି ଉପାସ ରହିବାକୁ ପଡ଼ିଥାଏ । ଅଭାବ ଅନାଟନ ଯୋଗୁଁ ପାରିବାରିକ ଅଶାନ୍ତି, ରୁଗ୍ଣ ସନ୍ତାନ ଏବଂ ବୃଦ୍ଧ ପିତାମାତାଙ୍କର ଦୁରାବସ୍ଥା ଦେଖି ଜଗଦାନନ୍ଦ ବେଳେ ବେଳେ ଅଧୀର ହୋଇପଡ଼େ । ଦୁଃଖପରେ ସୁଖ ଦୁନିଆଁର ନୀତି । ସେହି ବିଶ୍ୱାସରେ ସେ ଦିନ ଗଡ଼ାଇ ଚାଲିଥାଏ ।

ଦିନେ ଜଗଦାନନ୍ଦ କାମରୁ ଫେରି ସନ୍ଧ୍ୟାବେଳେ ନିଜ ଛୋଟ ଝିଅଟିକୁ କୋଳରେ ଧରି ଦାଣ୍ଡ ପିଣ୍ଡାରେ ବସିଥାଏ । ହଠାତ୍ ସେ ଦେଖିଲା ଯେ ଗ୍ରାମର କେତେକ ଲୋକ ଦଉଡ଼ାଦଉଡ଼ି ହୋଇ ସ୍କୁଲ ଆଡ଼କୁ ଯାଉଛନ୍ତି । ସେମାନଙ୍କଠାରୁ ବୁଝିଲା ଯେ ତାଳଚେର ବ୍ଲକ ଉନ୍ନୟନ ଅଧିକାରୀ ଏବଂ ତାଙ୍କର କେତେକ ସହକର୍ମୀ ଆସିଛନ୍ତି । ରାଜ୍ୟସରକାରଙ୍କ "ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ଅର୍ଥନୈତିକ ଉତ୍ଥାନ ଯୋଜନା" ମାଧ୍ୟମରେ କନ୍ଦାବାହାଲ ଗ୍ରାମର କେତେଜଣ ଗରିବ ଲୋକଙ୍କ ଅର୍ଥନୈତିକ ଅବସ୍ଥାର ବିକାଶ ନିମନ୍ତେ ଆର୍ଥିକ ସାହାଯ୍ୟ ଦିଆଯିବ ।

ପ୍ରଥମେ ଜଗଦାନନ୍ଦ ମନେକଲା ଯେ ତା'ର ଜମିବାଡ଼ି ନାହିଁ । ଖଣ୍ଡିଏ ୧୦ ଡେସିମିଲ ପରିମିତ ବାସଗୃହ ଡିହ ଏବଂ ତହିଁ ଉପରେ ଭଙ୍ଗା ଘରଟିଏ । ଏ ଅବସ୍ଥାରେ ତାକୁ ଆର୍ଥିକ ସାହାଯ୍ୟ ଓ ଋଣ ମିଳିବ ବା କିପରି ? ତଥାପି ସାହସ ବାନ୍ଧି ଗ୍ରାମବାସୀଙ୍କ ସଙ୍ଗେ ଚାଲିଲା ସ୍କୁଲ ପର୍ଯ୍ୟନ୍ତ । ଆଲୋଚନା ଶେଷରେ ଜାଣିଲା ଯେ "ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କ ଅର୍ଥନୈତିକ ଉତ୍ଥାନ ଯୋଜନା" ତା'ପରି ଗରିବ ଏବଂ ଭୂମିହୀନ ଲୋକଙ୍କ ଅର୍ଥନୈତିକ ଉନ୍ନତି ନିମନ୍ତେ ଉଦ୍ଦିଷ୍ଟ ।

ଗ୍ରାମର ଦଶଜଣ ଗରିବ ଲୋକଙ୍କ ନାମ ତାଲିକା କ୍ରମ-ଅନୁସାରେ କରାଗଲା ଏବଂ ସେଥିରେ ଜଗଦାନନ୍ଦର ନାମ ସ୍ଥାନ ପାଇଲା । ସେ ଗୋଟିଏ ଛୋଟ ଦୋକାନ କରିବା ସକାଶେ ଋଣ ନେବାକୁ ସିଦ୍ଧାନ୍ତ କଲା । ବ୍ଲକ ଏବଂ ବ୍ୟାଙ୍କ୍ ସ୍ତରରେ ସମସ୍ତ କାଗଜପତ୍ର ତନଖି ହେବାପରେ ୧୯୮୩ ମସିହା ଫେବୃଆରୀ ମାସ ତା ୫ରିଖ ଦିନ ୟୁନାଇଟେଡ଼ କମର୍ସିଆଲ ବ୍ୟାଙ୍କ, ତାଳଚେର ଶାଖା ଜରିଆରେ ଜଗଦାନନ୍ଦକୁ ୩,୦୦୦ ଟଙ୍କା ମିଳିଲା । ତନ୍ମଧ୍ୟରୁ ୨,୨୫୦ ଟଙ୍କା ସରକାରୀ ସାହାଯ୍ୟ ଓ ୭୫୦ ଟଙ୍କା ଋଣ । ଜଗଦାନନ୍ଦ ମନରେ ସେଦିନ ଯେଉଁ ଅପୂର୍ବ ଆନନ୍ଦ ସେ କଥା ଭାଷାରେ ପ୍ରକାଶ କରିବା ଅସମ୍ଭବ । ଜଗଦାନନ୍ଦ କାଳ ବିଳମ୍ବ ନକରି ତାଳଚେର ଟାଉନସ୍ଥ ହାଟ ପୋଟାଠାରେ ଏକ ଖିଲିପାନ ଓ ପରିବା ଦୋକାନ ଦେବାକୁ ଠିକ୍ କଲା । ମାସକୁ ୪୦ ଟଙ୍କା ଭଡ଼ାରେ ଗୋଟିଏ କ୍ୟାବିନ ନେଇ ଦୋକାନ ଆରମ୍ଭ କଲା । ପ୍ରତିଦିନ ପ୍ରାୟ ଷାଠିଏ ସତୁରି ଟଙ୍କା ପର୍ଯ୍ୟନ୍ତ ଜିନିଷ ବିକ୍ରି ହେଉଛି । ଗତ ୧୪ ମାସ ମଧ୍ୟରେ ସେ ବ୍ୟାଙ୍କରୁ ଆଣିଥିବା ଋଣବାବଦକୁ ୭୫୦ ଟଙ୍କା ମଧ୍ୟରୁ ୬୫୦ ଟଙ୍କା ପରିଶୋଧ କରି ପାରିଛି । ଦୋକାନରେ ଜିନିଷ ପତ୍ର ମଧ୍ୟ କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ଦୁଇଓଳି ପାଇଁ ଅଭାବ ଚିନ୍ତା ନାହିଁ ବୋଲି କହିଲେ ଚଳେ ।

ପିଲାଙ୍କୁ ସ୍କୁଲକୁ ପଠାଇବା ଆରମ୍ଭ କରିଛି । ଏବର୍ଷ ନଡ଼ା ବାଉଁଶ ବିଖଣ୍ଡ ଉଲୁଖଡ଼ ଦେଇ ଭଙ୍ଗା କୁଡ଼ିଆର କଳେବର କିଛିଟା ଉନ୍ନତି କରିପାରିଛି । ସର୍ବୋପରି ବୃଦ୍ଧ ପିତାମାତାଙ୍କ ମୁହଁରେ ଟିକିଏ ହସ ଫୁଟାଇ ପାରିଛି । ଜଗଦାନନ୍ଦ ଦୃଢ଼ ସଂକଳ୍ପ କରିଛି ଯେ ବ୍ୟାଙ୍କର ଅବଶିଷ୍ଟ ଋଣ ଟଙ୍କା ଖୁବ୍ ଶୀଘ୍ର ପରିଶୋଧ କରି ଅନ୍ୟ ଯୋଜନା ମାଧ୍ୟମରେ ଅଧିକ ଟଙ୍କା ଋଣ ଆଣି ଗୋଟିଏ ବଡ଼ ପରିବା ଏବଂ ଡାଲିଗୁଡ଼ ଦୋକାନ କରିବ ।

ଏହିମଧ୍ୟରେ ଢେଙ୍କାନାଳ ଜିଲାପାଳ, ତାଳଚେର ଅନୁ ବିଭାଗୀୟ ଅଧିକାରୀ, ଜିଲ୍ଲା ଗ୍ରାମାଞ୍ଚଳ ଉନ୍ନୟନ ସଂସ୍ଥାର ପ୍ରୋଜେକ୍ଟ୍ ଡାଇରେକ୍ଟର, ତାଳଚେର ବ୍ଲକଉନ୍ନୟନ ଅଧିକାରୀ ଓ ଅନ୍ୟାନ୍ୟ କର୍ମଚାରୀ ଜଗଦାନନ୍ଦର ଦୋକାନ ପରିଦର୍ଶନ କରି ସନ୍ତୋଷଲାଭ କରିବା ସଙ୍ଗେ ସଙ୍ଗେ ଉନ୍ନତି ପଥରେ ଅଗ୍ରସର ହେବାକୁ ତାକୁ ଉତ୍ସାହିତ କରିଛନ୍ତି ।

ଅନୁବିଭାଗୀୟ ସୂଚନା ଓ ଲୋକ-ସମ୍ପର୍କ ଅଧିକାରୀ,
ତାଳଚେର ।

# ଗରିବର ସେବାରେ

ଶ୍ରୀ ନୃସିଂହ ଚରଣ ଦାଶ

ସମାଜର ଦଳିତ ତଥା ଗରିବ ଶ୍ରେଣୀର ଲୋକମାନଙ୍କ ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ହେଉଛି ୨୦ ଦଫା କାର୍ଯ୍ୟକ୍ରମର ମୂଳ ଉଦ୍ଦେଶ୍ୟ । ପ୍ରତ୍ୟେକ ଗରିବ ପରିବାର ଏହା ଉପଲବ୍ଧି କରି ପାରିଛନ୍ତି । ଆଜିବି କୌଣସି ବୃଦ୍ଧ ଖଟି-ଖିଆଙ୍କୁ ପଚାରିଲେ ସ୍ୱାଧୀନତା ପୂର୍ବର ତା'ର ନିଜ ଅଙ୍ଗେ-ନିଭାଇ ଥିବା କରୁଣ କାହାଣୀ କହିଥାଏ । ରାତ ହେଉ ବା ଦିନ ହେଉ ଗାଁର ଚୌକିଦାର ବଡ଼ପାଟିରେ ଡାକ ପକାଇଲା-ମାତ୍ରେ ଖାଉଥିବା ଭାତଥାଳି ଛାଡ଼ି ଗରିବ ପ୍ରଜା କାମ ପାଇଁ ବାହାରି ପଡୁଥିଲା । ଯଦି କେହି ଅବଜ୍ଞା କରେ, ତା' ହେଲେ ତା' ପାଇଁ ଥିଲା ଚାବୁକ ମାଡ଼ । ତା' ସାଙ୍ଗକୁ ଅକଥନୀୟ ଅତ୍ୟାଚାର । ଅନେକ ଗରିବ ଲୋକେ ଅନ୍ୟ ଧନୀ ବ୍ୟକ୍ତିଙ୍କ ପାଖରେ ଚୁକ୍ତିନାମା କରି କେତୋଟି ବର୍ଷ ବାଧ୍ୟତାମୂଳକ ଭାବେ କାମ କରୁଥିଲେ କିମ୍ବା ଆଜୀବନ ଦାସତ୍ୱ ସ୍ୱୀକାର କରି ରହୁଥିଲେ । ଏହିପରି ଭାବରେ କେତେକ ମୁଷ୍ଟିମେୟ ଧନୀ ଶ୍ରେଣୀର ଲୋକେ ନିରୀହ ଶ୍ରମିକମାନଙ୍କୁ ଶୋଷଣ କରୁଥିଲେ ।

ସମୟ ବଦଳି ଯାଇଛି । ସାମ୍ରାଜ୍ୟବାଦ ଲୋପହେବା କ୍ରମେ ଦେଶ ସ୍ୱାଧୀନ ହୋଇଛି । ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠିତ ହୋଇ ସରକାର ଗଢ଼ା ଯାଇଛି । ସରକାରଙ୍କର ଲକ୍ଷ୍ୟ ରହିଲା ସେହି ଚିର ଅବହେଳିତ, ନିଷ୍ପେଷିତ ଗୋତି ଶ୍ରମିକମାନଙ୍କ ଉପରେ । ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ମୋଚନ ନିମନ୍ତେ ସରକାର ଅନେକ କିସମର ଯୋଜନା କରି-ଚାଲିଛନ୍ତି । ଆଜି ପ୍ରଧାନମନ୍ତ୍ରୀଙ୍କର ଦେଶପାଇଁ ୨୦ ଦଫା କାର୍ଯ୍ୟକ୍ରମରେ ଗୋତିଶ୍ରମିକମାନଙ୍କର ଥଇଥାନ ବିଷୟଟି ମଧ୍ୟ ସ୍ଥାନ ପାଇଛି । ୨୦ ଦଫା କାର୍ଯ୍ୟକ୍ରମ ଦ୍ୱାରା ଅନେକ ଗୋତି ଶ୍ରମିକ ପରିବାର ଉପକୃତ ହୋଇପାରିଛନ୍ତି ।

ସୁନ୍ଦରଗଡ଼ ଜିଲ୍ଲାର ୧୭ଟି ବ୍ଲକ ମଧ୍ୟରୁ ଗୁରୁଣ୍ଡିଆ ବ୍ଲକ୍ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଏହା ପାହାଡ଼ ଜଙ୍ଗଲ ପରିପୂର୍ଣ୍ଣ ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ଏହି ଅଞ୍ଚଳର ଅନେକ ବୟସ୍କ ଲୋକେ କହନ୍ତି, ଏହି ଅଞ୍ଚଳକୁ ଆସିବାକୁ ହେଲେ (ଗୁରୁଣ୍ଡି ଗୁରୁଣ୍ଡି) ଅର୍ଥାତ ବହୁ କଷ୍ଟରେ ଆସିବାକୁ ପଡୁଥିଲା । ତେଣୁ ଏହି ଅଞ୍ଚଳର ନାମ ଗୁରୁଣ୍ଡିଆ ହୋଇଛି । କିନ୍ତୁ ଆଜିକାଲି ଆଉ ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ପଡୁନାହିଁ । ପୂର୍ବାପେକ୍ଷା ରାସ୍ତାଘାଟରେ ଯଥେଷ୍ଟ ଉନ୍ନତି ହୋଇଛି ।

ଆଜି ଗୁରୁଣ୍ଡିଆ ବ୍ଲକର ଦୁଇଟି ଗ୍ରାମ ସାତକୁଟା ଏବଂ ବରଘାଟକୁ ଦେଖିଲେ ମନେହୁଏ ସତେକି ଭିନ୍ନ ଭିନ୍ନ କୌଣସି ଦୁଇଟି ଉନ୍ନତ କୃଷିକ୍ଷେତ୍ର । ଖରିଫ ହେଉ ବା ରବି ହେଉ ସବୁବେଳେ ଶସ୍ୟ ଶ୍ୟାମଳାରେ ପରିପୂର୍ଣ୍ଣ । ସାତକୁଟା ଗ୍ରାମରେ ୩୮ ଜଣ ଗୋତି ଶ୍ରମିକଙ୍କୁ ୪୦ ଏକର ଜମି ଦିଆଯାଇ ଥଇଥାନ କରାଯାଇଛି ଏବଂ ବରଘାଟ ଗ୍ରାମରେ ୧୦ ଜଣ ଗୋତି ଶ୍ରମିକଙ୍କୁ ୧୫ ଏକର ଜମି ଦିଆଯାଇ ଥଇଥାନ କରାଯାଇଛି । ୧୯୮୧-୮୨ ମସିହାରେ ଇ. ଆର୍. ଆର୍. ପି. କାର୍ଯ୍ୟକ୍ରମର ଜମିଭିତ୍ତିକ ପରିକଳ୍ପନାରେ ସେମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇ ସେମାନଙ୍କର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ପାଇଁ ଏହା ଏକ ବଳିଷ୍ଠ ପଦକ୍ଷେପ । ଚାଷ ନିମିତ୍ତ ଏହି ୩୮ଟି ପରିବାରକୁ ଆବଶ୍ୟକୀୟ ସବୁଜିନିଷ ଯୋଗାଇ ଦିଆଯାଇଛି । ଗତ ୧୯୮୨-୮୩ ମସିହାରେ ଚିନାବାଦାମ ଚାଷକରି ଟ୧୦,୪୫୦ଙ୍କା ମୂଲ୍ୟରେ ୨୦'୯୦ କ୍ୱିଣ୍ଟାଲ ଚିନାବାଦାମ ବିକ୍ରି କରିଥିଲେ । ରାଗି ଚାଷ କରି ଟ୨,୯୩୩'୬୦ପ ମୂଲ୍ୟରେ ୭'୩୩ କ୍ୱିଣ୍ଟାଲ ରାଗି ବିକ୍ରି କରିଥିଲେ । ୩୮ଟି ପରିବାର ମଧ୍ୟରେ ମୋଟ ଟ୧୩,୩୮୩'୬୦ ପଇସାକୁ ସମ ପରିମାଣରେ ବଣ୍ଟାଯାଇ ପ୍ରତ୍ୟେକେ ଗୁରୁଣ୍ଡିଆ ଷ୍ଟେଟବ୍ୟାଙ୍କ ଅଫ ଇଣ୍ଡିଆ ଶାଖାରେ ଟ୩୫୨'୨୦ପ. ଜମାକରି ପାସବୁକ୍ ଖୋଲିଛନ୍ତି ।

ବାସ୍ତବିକ ସେମାନେ ନିଜନିଜର ପରିଶ୍ରମର ଫଳ ପାଉଛନ୍ତି । ସରକାରଙ୍କ ଜମି । ସେଥିରେ ସେମାନେ କାମ କରିବେ । କାମକରି ମଜୁରୀ ପାଇବେ । ପୁଣି ଯାହା ଫସଲ ହେବ ତାର ଅଧିକାରୀ ହେବେ । ପରେ ପରେ ଜମିର ମାଲିକ ହେବେ । ଏହି ସବୁ ସୁବିଧାର କାହାଣୀ ଶୁଣି ସେମାନଙ୍କ ମନରେ ଆନନ୍ଦର ଲହରୀ ଖେଳିଯାଏ । ଆଜି ସେହି ପରିବାର-ଗୁଡ଼ିକ ଅତି ଆନନ୍ଦରେ ଦିନ କାଟୁଛନ୍ତି । ଖାଇବାପିଇବା, ପିନ୍ଧାପଟାର କିଛି ଚିନ୍ତା ନାହିଁ । ଅନେକ ପରିବାର ନିଜ ନିଜର ସ୍କୁଲ ଯିବା ଯୋଗ୍ୟ ଛୁଆମାନଙ୍କୁ ସ୍କୁଲକୁ ପଠାଉଛନ୍ତି । ସରକାରଙ୍କ ଇ. ଆର୍. ଆର୍. ପି. କାର୍ଯ୍ୟକ୍ରମ ସେମାନଙ୍କ ପରିବାର-ବର୍ଗଙ୍କ ପ୍ରତି ଆଶୀର୍ବାଦ ବୋଲି ସେମାନେ ସମସ୍ୱରରେ କହିଥାନ୍ତି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
[illegible] ।

# ପ୍ରଗତି ପ୍ରସଙ୍ଗ

## ଦାରିଦ୍ର୍ୟମୋଚନ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କର

ବିଂଶସୂତ୍ରୀ କାର୍ଯ୍ୟକ୍ରମ, ଆଇ. ଆର୍. ଡି., ଇ. ଆର୍. ଆର୍. ପି. ଏବଂ ଶିକ୍ଷିତ ବେକାର ଯୁବକଙ୍କ ଆତ୍ମନିଯୁକ୍ତି ଯୋଜନା ପରି ସମସ୍ତ ଦାରିଦ୍ର୍ୟମୋଚନ କାର୍ଯ୍ୟକ୍ରମର ସଫଳ ରୂପାୟନ ଉପରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଛନ୍ତି ।

ଗତ ଅକ୍ଟୋବର ୧୪ ତାରିଖଠାରୁ ଭୁବନେଶ୍ୱରରେ ଅନୁଷ୍ଠିତ ଜିଲ୍ଲାପାଳ ଓ ରାଜସ୍ୱ କମିଶନରମାନଙ୍କ ତିନିଦିନିଆ ସମ୍ମିଳନୀର ଉଦଯାପନ ଦିବସରେ ବିଂଶସୂତ୍ରୀ କାର୍ଯ୍ୟକ୍ରମ, ଖାଦ୍ୟଶସ୍ୟ ସଂଗ୍ରହ, ରିଲିଫ କାର୍ଯ୍ୟ, ରବି ଫସଲ କାର୍ଯ୍ୟକ୍ରମ, ପଲ୍ଲୀବନ୍ଧୁ କେନ୍ଦ୍ର ସ୍ଥାପନ ଏବଂ ବେକାରଙ୍କ ଆତ୍ମନିଯୁକ୍ତ ଯୋଜନାଗୁଡ଼ିକର ଅଗ୍ରଗତି ସଂପର୍କରେ ମୁଖ୍ୟତଃ ସମୀକ୍ଷା କରାଯାଇଥିଲା । ଓଡ଼ିଶାରେ ଦାରିଦ୍ର୍ୟମୋଚନ କାର୍ଯ୍ୟକ୍ରମଗୁଡ଼ିକ କାର୍ଯ୍ୟକାରୀ କରିବା ଲାଗି ଯେଉଁସବୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି, ସେଗୁଡ଼ିକ ସଂପୂର୍ଣ୍ଣ ଭାବରେ ହାସଲ କରିବା ଦିଗରେ ଯେପରି କୌଣସି ଅବହେଳା ନ ହୁଏ, ସେଥିପ୍ରତି ଜିଲ୍ଲାପାଳମାନେ ସଜାଗ ରହିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ବ୍ଲକଗୁଡ଼ିକ ଉପରେ ଏହିସବୁ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ପାଇଁ ଅଧିକ ଚାପ ପଡୁଥିବାରୁ ବ୍ଲକ ପ୍ରଶାସନିକ ବ୍ୟବସ୍ଥାକୁ ସୁଦୃଢ଼ କରିବାକୁ ଏହି ସମ୍ମିଳନୀରେ ନିଷ୍ପତ୍ତି କରାଯାଇଛି ।

ବିଂଶସୂତ୍ରୀ କାର୍ଯ୍ୟକ୍ରମର ସମୀକ୍ଷାରୁ ପ୍ରକାଶ ଯେ ଗତ ୨ଟି ଆର୍ଥିକ ବର୍ଷରେ ଏହାର ଅଗ୍ରଗତି ସନ୍ତୋଷଜନକ ହୋଇଥିଲା । ଚଳିତ ଆର୍ଥିକ ବର୍ଷରେ ପରିବାର କଲ୍ୟାଣ, ନଳକୂପ ବିଦ୍ୟୁତିକରଣ ଓ ପାନୀୟ ଜଳ ଯୋଗାଣ ପରି କାର୍ଯ୍ୟକ୍ରମଗୁଡ଼ିକ ତ୍ୱରାନ୍ୱିତ କରିବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦଆଯାଇଛି । ବିଂଶସୂତ୍ରୀ କାର୍ଯ୍ୟକ୍ରମ ସମେତ ଦାରିଦ୍ର୍ୟମୋଚନ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ଦିଗରେ ଯେଉଁସବୁ ଅଭାବ ଅସୁବିଧା ଦେଖାଦେଇଛି ବୋଲି ଜିଲ୍ଲାପାଳମାନେ ଦର୍ଶାଇଥିଲେ, ତା'ର ଦୂରୀକରଣ ପାଇଁ ସଂପୃକ୍ତ ବିଭାଗର କର୍ତ୍ତୃପକ୍ଷମାନେ ତୁରନ୍ତ ପଦକ୍ଷେପ ନେବେ ବୋଲି ସମ୍ମିଳନୀରେ ନିଷ୍ପତ୍ତି କରାଯାଇଥିଲା । ଏଥିପାଇଁ ସରକାରୀ ବିଭାଗଗୁଡ଼ିକ ଯେଉଁ ପଦରେ ଲୋକ ନିଯୁକ୍ତି କରିବା ଏବଂ ଜିଲ୍ଲା କର୍ତ୍ତୃପକ୍ଷଙ୍କୁ କ୍ଷମତା ପ୍ରଦାନ କରିବା ଆବଶ୍ୟକ ପଡ଼ିବ, ତାହା ଯଥାଶୀଘ୍ର କରାଯିବ ବୋଲି ମଧ୍ୟ ନିଷ୍ପତ୍ତି ହୋଇଛି ।

ରାଜ୍ୟରେ ସାଧାରଣ ବଣ୍ଟନ ବ୍ୟବସ୍ଥା ସନ୍ତୋଷଜନକ ଭାବରେ କାର୍ଯ୍ୟକାରୀ ହେଉଛି ଏବଂ ଖାଦ୍ୟଦ୍ରବ୍ୟ ସମେତ ଅତ୍ୟାବଶ୍ୟକୀୟ ଦ୍ରବ୍ୟସବୁ ଯଥେଷ୍ଟ ପରିମାଣରେ ମହଜୁଦ ରହିଛି ବୋଲି ଏହି ସମ୍ମିଳନୀରେ ପ୍ରକାଶ ପାଇଥିଲା ।

ରବି ଫସଲ କାର୍ଯ୍ୟକ୍ରମ ସଂପର୍କରେ ହୋଇଥିବା ଆଲୋଚନାରୁ ପ୍ରକାଶ ଯେ କୃଷୀମାନଙ୍କୁ ସାର ଓ ପୋକମରା ଔଷଧ ଇତ୍ୟାଦି ଯଥା ସମୟରେ ଯୋଗାଇ ଦିଆଯିବ ଏବଂ ଯେଉଁ ଅଞ୍ଚଳରେ ବନ୍ୟା ଓ ମରୁଡ଼ି ଯୋଗୁଁ ଖରିଫ ଫସଲ ନଷ୍ଟ ହୋଇଯାଇଛି, ସେଠାରେ ସ୍ୱତନ୍ତ୍ର ରବି କାର୍ଯ୍ୟକ୍ରମ ହାତକୁ ନିଆଯିବ । ଏହା ବ୍ୟତୀତ ବନ୍ୟା ଓ ମରୁଡ଼ି କ୍ଷତିଗ୍ରସ୍ତ ଲୋକମାନଙ୍କୁ ଯଥେଷ୍ଟ ପରିମାଣ ରିଲିଫ୍ ଦେବା ଲାଗି ମଧ୍ୟ ନିଷ୍ପତ୍ତି ହୋଇଛି ।

ଗତ ଆର୍ଥିକ ବର୍ଷରେ ଶିକ୍ଷିତ ବେକାର ଯୁବକଙ୍କ ଆତ୍ମ ନିଯୁକ୍ତି ଯୋଜନାର ହୋଇଥିବା ଅଗ୍ରଗତି ସଂପର୍କରେ ଏହି ବୈଠକରେ ଜିଲ୍ଲାୱାରୀ ସମୀକ୍ଷା କରାଯାଇଥିଲା ଏବଂ ଚଳିତ ବର୍ଷ ଏହି ଯୋଜନା ପାଇଁ ଧାର୍ଯ୍ୟ ହୋଇଥିବା ଲକ୍ଷ୍ୟ ହାସଲ କରିବା ଦିଗରେ ବିହିତ ପଦକ୍ଷେପ ନିଆଯିବ ବୋଲି ନିଷ୍ପତ୍ତି ନିଆଗଲା । ସମଗ୍ର ରାଜ୍ୟରେ ୧୦୦ଟି ପଲ୍ଲୀବନ୍ଧୁ କେନ୍ଦ୍ର ସ୍ଥାପନ ପାଇଁ ଯେଉଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି, ତନ୍ମଧ୍ୟରୁ ୬୪ଟି କେନ୍ଦ୍ର ସ୍ଥାପିତ ହେଲଣି । ଅବଶିଷ୍ଟ ୩୬ଟି କେନ୍ଦ୍ର ସ୍ଥାପନ ପାଇଁ ତୁରନ୍ତ ପଦକ୍ଷେପ ନେବାକୁ ସଂପୃକ୍ତ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ବୈଠକ ଶେଷରେ ମୁଖ୍ୟମନ୍ତ୍ରୀ ଭାଷଣ ପ୍ରସଙ୍ଗରେ ରାଜ୍ୟର ପ୍ରତ୍ୟେକ ଗ୍ରାମରେ ୫ ହଜାର ଟଙ୍କାରୁ ୧୦ ହଜାର ଟଙ୍କା ମଧ୍ୟରେ ସ୍ଥାୟୀ ସାର୍ବଜନୀନ ପ୍ରକଳ୍ପ ସବୁ ନିର୍ମାଣ ପାଇଁ ଯେଉଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ରହିଛି, ସେଗୁଡ଼ିକର ସଫଳ ରୂପାୟନ ଦିଗରେ ଗୁରୁତ୍ୱ ଆରୋପ କରିଥିଲେ । ଏହା ବ୍ୟତୀତ ପ୍ରତ୍ୟେକ ବ୍ଲକରେ ଅତିରିକ୍ତ ୫୦୦ ଏକରରୁ ୧ ହଜାର ଏକର ଜମିକୁ ଜଳସେଚିତ କରିବା ଲାଗି ବିଶେଷ ପଦକ୍ଷେପ ନେବା ପାଇଁ ସେ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ । ବିଭିନ୍ନ ଉନ୍ନୟନ କାର୍ଯ୍ୟ କାର୍ଯ୍ୟକାରୀ କରିବା, ଆଇନ ଶୃଙ୍ଖଳା ପରିସ୍ଥିତିର ମୁକାବିଲା କରିବା ଏବଂ ବନ୍ୟା ଓ ମରୁଡ଼ିଗ୍ରସ୍ତ ଅଞ୍ଚଳର ଲୋକମାନଙ୍କୁ ତୁରନ୍ତ ରିଲିଫ ଯୋଗାଇ ଦେବା କ୍ଷେତ୍ରରେ ଜିଲ୍ଲାପାଳମାନେ ଯେଉଁ ପଦକ୍ଷେପ ନେଇଛନ୍ତି, ତାହା ପ୍ରଶଂସନୀୟ ବୋଲି ମୁଖ୍ୟମନ୍ତ୍ରୀ ମତବ୍ୟକ୍ତ କରି ଆଗାମୀ ମାସଗୁଡ଼ିକରେ ସେମାନଙ୍କ ଏଭଳି ନିଷ୍ଠାପର ଉଦ୍ୟମ ଅବ୍ୟାହତ ରହିଛି ବୋଲି ଦୃଢ଼ ଆଶା ପ୍ରକାଶ କରିଥିଲେ ।

## କୃଷିପାଇଁ ବିଦ୍ୟୁତ୍ ଯୋଗାଣ

ବର୍ତ୍ତମାନର ସରକାର କୃଷିର ଉନ୍ନତି ଉପରେ ବିଶେଷ ଗୁରୁତ୍ୱ ଆରୋପକରି କୃଷୀମାନଙ୍କୁ ଯେଉଁ କେତେକ ସୁବିଧା ସୁଯୋଗ ଯୋଗାଇ ଦେଉଛନ୍ତି, କୃଷିପାଇଁ ବିଦ୍ୟୁତଶକ୍ତି ଯୋଗାଇଦେବା ସେଥି ମଧ୍ୟରେ ଅନ୍ୟତମ ବୋଲି ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ

ଶ୍ରୀ ନିରଂଜନ ପଟ୍ଟନାୟକ ପ୍ରକାଶ କରିଛନ୍ତି । ସେ କହିଛନ୍ତି ଯେ କୃଷୀମାନଙ୍କୁ ପଂପସେଟ ବସାଇବାପାଇଁ ଉତ୍ସାହିତ କରାଯିବା ସଂଗେ ସଂଗେ ସେମାନଙ୍କୁ ଯୋଗାଇ ଦିଆଯାଉଥିବା ବିଦ୍ୟୁତ ବାବଦ ଶୁଳ୍କହାର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟରେ କମ୍ ରଖାଯାଇଛି ଏବଂ ଓଡ଼ିଶା ଏକମାତ୍ର ରାଜ୍ୟ, ଯେଉଁଠାରେ କି କୃଷକାର୍ଯ୍ୟପାଇଁ ଏକ କିଲୋମିଟର ବିଦ୍ୟୁତ ଲାଇନ୍ ବିନା ମୂଲ୍ୟରେ ଯୋଗାଇ ଦିଆଯାଇଥାଏ । ଗତ ୪ ବର୍ଷ ମଧ୍ୟରେ ଏହି ବିଦ୍ୟୁତ୍ ଶୁଳ୍କହାରକୁ ବୃଦ୍ଧି କରାଯାଇନାହିଁ ବୋଲି ଶ୍ରୀ ପଟ୍ଟନାୟକ ପ୍ରକାଶକରି ଘରୋଇ ବ୍ୟବହାର ପାଇଁ ବିଦ୍ୟୁତ ଶୁଳ୍କହାର ମଧ୍ୟ ଆମ ରାଜ୍ୟରେ ଅନ୍ୟାନ୍ୟ ରାଜ୍ୟ ତୁଳନାରେ କମଥିବା ସୂଚାଇଛନ୍ତି । ଜଳସେଚନପାଇଁ ବ୍ୟବହୃତ ବିଦ୍ୟୁତ ବାବଦ ଶୁଳ୍କହାର ଚଳିତ ବର୍ଷ ମଧ୍ୟ ବୃଦ୍ଧି କରାଯିବାର କୌଣସି ଯୋଜନା ନାହିଁବୋଲି ସେ ପ୍ରକାଶ କରିଛନ୍ତି ।

ଆଂଧ୍ରପ୍ରଦେଶର କ୍ରୟ କରାଯାଉଥିବା ବିଦ୍ୟୁତଶକ୍ତି ସଂପର୍କରେ ସୂଚନାଦେଇ ଶ୍ରୀ ପଟ୍ଟନାୟକ କହିଲେ ଯେ କେତେକ ଶିଳ୍ପାନୁଷ୍ଠାନମାନଂକର ବର୍ଦ୍ଧିତ ଚାହିଦା ପୂରଣପାଇଁ ଏହି ବିଦ୍ୟୁତ ପଡ଼ୋଶୀ ରାଜ୍ୟରୁ କ୍ରୟ କରାଯାଉଛି ଏବଂ ବିନା ଲାଭରେ କ୍ରୟମୂଲ୍ୟରେ ହିଁ ଏହି ବିଦ୍ୟୁତ୍ ଶିଳ୍ପାନୁଷ୍ଠାନଂ ଗୁଡ଼ିକୁ ଯୋଗାଇ ଦିଆଯାଉଛି ।

ରାଜ୍ୟରେ ବିଦ୍ୟୁତ୍ ଶକ୍ତିର ଉତ୍ପାଦନ ଓ ଏହାର ସୁଷମ ବଂଟନ କ୍ଷେତ୍ରରେ ଉନ୍ନତିପାଇଁ ବିଦ୍ୟୁତ୍ ଶୁଳ୍କହାର ସାମାନ୍ୟ ବୃଦ୍ଧି ପାଇଲେ ତଦ୍ଵାରା କୃଷୀ ଓ ଗ୍ରାମାଂଚଳର ଲୋକମାନେ କ୍ଷତିଗ୍ରସ୍ତ ହେବେନାହିଁବୋଲି ଶ୍ରୀ ପଟ୍ଟନାୟକ ପ୍ରକାଶକରି ରାଜ୍ୟର ଅର୍ଥନୈତିକ ବୃଦ୍ଧି ପାଇଁ ବିଦ୍ୟୁତଶକ୍ତିର ବ୍ୟବହାର ଅତ୍ୟନ୍ତ ଗୁରୁତ୍ଵପୂର୍ଣ୍ଣ ହୋଇଥିବାରୁ ବିଦ୍ୟୁତ୍‌ଶକ୍ତିର ଅପବ୍ୟବହାର ରୋକିବା ଦିଗରେ ସମସ୍ତଙ୍କ ସହଯୋଗ କାମନା କରିଛନ୍ତି ।

---

## ଓଡ଼ିଶା ସାହିତ୍ୟ ଏକାଡେମୀର ସାଧାରଣ ପରିଷଦ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀର ସାଧାରଣ ପରିଷଦପାଇଁ ରାଜ୍ୟ ସରକାର ଶ୍ରୀ ସୁରେଂଦ୍ରନାଥ ମହାନ୍ତିଙ୍କୁ ସଭାପତି, ଶ୍ରୀ ରାଧାମୋହନ ଗଡ଼ନାୟକଂକୁ ଉପ-ସଭାପତି, ସାଂସ୍କୃତିକ ନିର୍ଦ୍ଦେଶାଳୟର ସିନିଅର ଅଡ଼ିଟ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ କୋଷାଧ୍ୟକ୍ଷ ଏବଂ ଏକାଡ଼େମୀର ସଂପାଦକଂକୁ ସଂପାଦକରୂପେ ମନୋନୀତ କରି ନିଯୁକ୍ତି ଦେଇଛନ୍ତି । ଏହା ବ୍ୟତୀତ ସାଂସ୍କୃତିକ ବିଭାଗ ନିର୍ଦ୍ଦେଶକ, ଉଚ୍ଚଶିକ୍ଷା ନିର୍ଦ୍ଦେଶକ, ଶ୍ରୀ କୁଂଜ ବିହାରୀ ଦାସ ଶ୍ରୀ ପ୍ରସନ୍ନ କୁମାର ପାଟସାହାଣୀ, ଶ୍ରୀ ସୁଧାଂଶୁ ମୋହନ ରାଉତରାୟ, ମୟୂରଭଞ୍ଜର ଶ୍ରୀ ସାତକଡ଼ି ହୋତା, ବାଲେଶ୍ଵରର ଶ୍ରୀ କାର୍ତ୍ତିକେଶ୍ଵର ପାତ୍ର, କେନ୍ଦୁଝରର ଶ୍ରୀ ଗଂଗାଧର ବଳ, କଟକର ଶ୍ରୀ ଗୋପୀନାଥ ମହାନ୍ତି, ଫୁଲବାଣୀର ଶ୍ରୀ କୃଷ୍ଣଚଂଦ୍ର ବେହେରା, ଢେଂକାନାଳର ଶ୍ରୀ ରମେଶ ଧଳ, ସମ୍ବଲପୁରର ଶ୍ରୀ ସୁନୀଲ ମିଶ୍ର, ବଲାଂଗୀରର ଶ୍ରୀ ଶ୍ରୀନିବାସ ଉଦ୍‌ଗାତା, ଗଂଜାମର ସୁନ୍ଦରଗଡ଼ର ଶ୍ରୀ ବିନୋଦଚଂଦ୍ର ନାୟକ, ଶ୍ରୀ ଗୌରୀକୁମାର ବ୍ରହ୍ମା, କୋରାପୁଟର ଶ୍ରୀ ରମେଶ ଦାସ, ପୁରୀର ଶ୍ରୀ ସତ୍ୟାନନ୍ଦ ଚଂପତିରାୟ, କଳାହାଣ୍ଡିର ଶ୍ରୀ ଜୟନ୍ତ ବେହେରା, ଉତ୍କଳ ବିଶ୍ଵବିଦ୍ୟାଳୟର ଡ଼ଃ କୃଷ୍ଣ ପ୍ରସାଦ ମିଶ୍ର, ଡ଼ଃ ଫଣୀ ମହାନ୍ତି ଓ ଡ଼ଃ ରତ୍ନାକର ଚଇନି, ବ୍ରହ୍ମପୁର ବିଶ୍ଵବିଦ୍ୟାଳୟର ଶ୍ରୀ ସୌଭାଗ୍ୟ ମିଶ୍ର, ଜଗନ୍ନାଥ ସଂସ୍କୃତ ବିଶ୍ଵବିଦ୍ୟାଳୟର ଡ଼ଃ ସଦାଶିବ ରଥଶର୍ମା, ସମ୍ବଲପୁର ବିଶ୍ଵବିଦ୍ୟାଳୟର ଶ୍ରୀ ବୃଂଦାବନ ଆଚାର୍ଯ୍ୟ ଓ ଶ୍ରୀ ମଧୁସୂଦନ ପତି ଏବଂ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ଵବିଦ୍ୟାଳୟର ଡ଼ଃ ନରସିଂହ ଚରଣ ପଣ୍ଡାଙ୍କୁ ସଭ୍ୟରୂପେ ମନୋନୟନ କରାଯାଇଛି ।

ପୁନଶ୍ଚ ରାଜ୍ୟ ସରକାର ସାଂସ୍କୃତିକ ବିଭାଗ ନିର୍ଦ୍ଦେଶକ ଓ ଶ୍ରୀ ସୁଧାଂଶୁ ମୋହନ ରାଉତରାୟଂକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ କାର୍ଯ୍ୟକାରୀ ମଣ୍ଡଳୀର ସଭ୍ୟରୂପେ ମନୋନୀତ କରିଛନ୍ତି ।

---

## ରାଜ୍ୟର ପରିବାର କଲ୍ୟାଣ କାର୍ଯ୍ୟକ୍ରମ

ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ଜୁଲାଇ ଶେଷ ସୁଦ୍ଧା ରାଜ୍ୟରେ ମୋଟ ୧୪,୪୬୫ ଜଣ ଜନ୍ମନିରୋଧ ଅସ୍ତ୍ରୋପଚାର କରିଛନ୍ତି । ସେମାନଂକ ମଧ୍ୟରେ ମହିଳାଂକ ସଂଖ୍ୟା ୧୨,୯୬୫ । ଜୁଲାଇ ମାସରେ ୫,୮୦୧ ଜଣ ମହିଳାଂକ ସମେତ ମୋଟ ୬,୫୮୮ ଜଣ ଜନ୍ମନିରୋଧପାଇଁ ଅସ୍ତ୍ରୋପଚାର କରିଛନ୍ତି । ଏହି ମାସରେ ୨୬ଜଣ ବିବାହିତା ମହିଳା 'କପର-ଟି' ମହିଳା ଲୁପ୍ ଓ ୩,୮୨୭ ଜଣ ବିବାହିତା ମହିଳା 'କପର-ଟି' ଗ୍ରହଣ କରିଛନ୍ତି । ଏହା ବ୍ୟତୀତ୍ ମୋଟ ୫ ଲକ୍ଷ ୧୭ ହଜାର ୬୯୩ଟି ଅନ୍ୟାନ୍ୟ ଗର୍ଭନିରୋଧକ ସାମଗ୍ରୀ ବିବାହିତା ଦଂପତିଂକ ମଧ୍ୟରେ ବଂଟନ କରାଯାଇଛି ।

ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ରାଜ୍ୟରେ ଅଧିକ ଲୋକପ୍ରିୟ କରାଇବାପାଇଁ ଜୁଲାଇମାସରେ ୫୦ଟି ଚଳଚିତ୍ର ପ୍ରଦର୍ଶନ, ୨୧ଟି ସାଂସ୍କୃତିକ କାର୍ଯ୍ୟକ୍ରମ ଓ ଗୋଟିଏ ପ୍ରଦର୍ଶନୀର ମଧ୍ୟ ଆୟୋଜନ କରାଯାଇଥିଲା । ଏହା ବ୍ୟତୀତ ୧୬,୮୯୯ଟି ଶିକ୍ଷା ସଂଘ ଗଠନ, ୩,୨୯୨ଟି ସଭା ଓ ୧୮୪ଟି ଆଲୋଚନାଚକ୍ର ଆୟୋଜନ କରାଯିବା ସଂଗେ ସଂଗେ ସ୍ଵାସ୍ଥ୍ୟ ବିଭାଗର କର୍ମଚାରୀମାନେ ୨ ଲକ୍ଷ ୭୫ ହଜାର ୪୭୨ ଜଣଂକୁ ବ୍ୟକ୍ତିଗତ ଭାବେ ସାକ୍ଷାତକରି ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସଂପର୍କରେ ବୁଝାଇଥିଲେ ।

---

## ରାଜସ୍ଵମନ୍ତ୍ରୀଙ୍କ ମରୁଡ଼ି ଅଞ୍ଚଳ ପରିଦର୍ଶନ

ରାଜସ୍ଵ ଓ ପରିବହନ ମନ୍ତ୍ରୀ ଶ୍ରୀ ବାସୁଦେବ ମହାପାତ୍ର ଗତ ଅକ୍‌ଟୋବର ୭ ତାରିଖରେ ଗଞ୍ଜାମ ଜିଲା ଗସ୍ତରେ ଯାଇ ବ୍ରହ୍ମପୁର ସବଡ଼ିଭିଜନର ପାତ୍ରପୁର, ଦିଗପହଣ୍ଡି ଓ ଚିକିଟି ବ୍ଲକରେ ବର୍ଷାଭାବରୁ ଘଟିଥିବା ମରୁଡ଼ିଜନିତ ପରିସ୍ଥିତି ସଂପର୍କରେ ଅନୁଧ୍ୟାନ କରିଥିଲେ । ସ୍ଥାନୀୟ ବିଧାୟକ ଶ୍ରୀ ଚିନ୍ତାମଣି ଦ୍ୟାନ୍‌ସାମନ୍ତରାୟଙ୍କ ସହ ରାଜସ୍ଵ ମନ୍ତ୍ରୀ ଗୋଡ଼ିପଦର, ଡ଼ି. ବଳରାମପୁର, ସବର ଦେଉପେଟା, ସରଦାପୁର ପ୍ରଭୃତି

ଅଞ୍ଚଳର ମରୁଡ଼ି ପରିସ୍ଥିତି ବୁଝି ଦେଖିଥିଲେ । ପରେ ସାମନ୍ତିଆପଲ୍ଲୀଠାରେ ଶ୍ରୀ ମହାପାତ୍ର ସ୍ଥାନୀୟ ଲୋକ-ପ୍ରତିନିଧି ଓ ଅଫିସରମାନଙ୍କସହ ଏ ସଂପର୍କରେ ଆଲୋଚନା କରି ମରୁଡ଼ି ପରିସ୍ଥିତିର ମୁକାବିଲା ପାଇଁ ଆବଶ୍ୟକୀୟ ପଦକ୍ଷେପ ନେବାକୁ ପରାମର୍ଶ ଦେଇଥିଲେ । ବିଶେଷ କରି ଉଠାଜଳସେଚନ ଓ କ୍ଷୁଦ୍ର ଜଳସେଚନ ମାଧ୍ୟମରେ ଧାନ ଜମିକୁ ପାଣି ଯୋଗାଇବା ପାଇଁ ସବୁପ୍ରକାର ପଦକ୍ଷେପ ନେବାକୁ ସେ କହିଥିଲେ । ଅପରାହ୍ନରେ ରାଜସ୍ୱମନ୍ତ୍ରୀ ଦିଗପହଣ୍ଡି ଯିବା ବାଟରେ ବର୍ଷାଭାବରୁ ଶୁଖିଯାଇଥିବା ଧାନଜମି ଦେଖିଥିଲେ ଏବଂ ପରିସ୍ଥିତିକୁ ସଂଭାଳିବା ପାଇଁ କି କି ପଦକ୍ଷେପ ନିଆଯିବା ଉଚିତ, ସ୍ଥାନୀୟ ଜନସାଧାରଣ ଓ ଅଫିସରମାନଙ୍କସହ ଦିଗପହଣ୍ଡିଠାରେ ଆଲୋଚନା କରିଥିଲେ । ଏହି ଆଲୋଚନାରେ ବିଧାୟକ ଶ୍ରୀ ରାଘବ ପରିଡ଼ା, ଶ୍ରୀ ଗନ୍ତାୟତ ସ୍ୱାଇଁ ଓ ଶ୍ରୀ ଚକ୍ରାମଣି ଦ୍ୟାନ୍‌ସାମନ୍ତରାୟ ଅଂଶ ଗ୍ରହଣ କରିଥିଲେ । ବିଶେଷକରି ଏହି ପରିସ୍ଥିତିକୁ ସଂଭାଳିବା ପାଇଁ ଜଳସେଚନ ବ୍ୟବସ୍ଥାର ଦୃଢ଼ୀକରଣ ଉପରେ ରାଜସ୍ୱମନ୍ତ୍ରୀ ଶ୍ରୀ ମହାପାତ୍ର ଗୁରୁତ୍ୱ ଆରୋପ କରିଥିଲେ ।

— —

## ସାପୁଆ-ବଡ଼ଯୋରା ମଧ୍ୟମ ଜଳସେଚନ ପ୍ରକଳ୍ପ

ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ବ୍ଲକରେ ସାପୁଆ-ବଡ଼ଯୋରା ସମନ୍ୱିତ ମଧ୍ୟମ ଜଳସେଚନ ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ୭ମ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ଆରମ୍ଭ କରାଯିବ ବୋଲି ଜଳସେଚନ ଓ ବିଦ୍ୟୁତ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ପ୍ରକାଶ କରିଛନ୍ତି । ଏହି ପ୍ରକଳ୍ପ ନିର୍ମାଣ ପାଇଁ ୯ କୋଟି ୬୨ ଲକ୍ଷ ଟଙ୍କା ବ୍ୟୟ କରାଯିବ ଏବଂ ଏହା ସଂପୂର୍ଣ୍ଣ ହେଲେ ୨,୪୧୦ ହେକ୍ଟର ଖରିଫ୍ ଓ ୧,୩୪୦ ହେକ୍ଟର ରବି ଫସଲକୁ ଜଳସେଚନ ସୁବିଧା ମିଳିପାରିବ ବୋଲି ଶ୍ରୀ ପଟ୍ଟନାୟକ ସୂଚନା ଦେଇଛନ୍ତି । ପ୍ରକଳ୍ପର ପ୍ରାରମ୍ଭିକ କାର୍ଯ୍ୟ ପାଇଁ ଚଳିତ ଆର୍ଥିକ ବର୍ଷରେ ୫ ଲକ୍ଷ ଟଙ୍କା ବରାଦ କରାଯାଇଛି । ଜଳସେଚନ ସୁବିଧା ନଥିବା ଅଞ୍ଚଳରେ ଜଳସେଚନ ବ୍ୟବସ୍ଥା କରିବା ପାଇଁ ରାଜ୍ୟ ସରକାର ଅଗ୍ରାଧିକାର ଦେଇ କେତେକ ସ୍ୱତନ୍ତ୍ର ପଦକ୍ଷେପ ନେଇଛନ୍ତି । ଏହା ଫଳରେ ନଦୀ ଓ କେନାଲ ସୁବିଧା ନଥିବା ଅଞ୍ଚଳରେ ଉଠା ଜଳସେଚନ ପଏଣ୍ଟ ପ୍ରତିଷ୍ଠା କରିବା ପାଇଁ ବ୍ୟାପକ ପଦକ୍ଷେପ ନିଆଯାଉଛି ବୋଲି ଶ୍ରୀ ପଟ୍ଟନାୟକ ସୂଚନା ଦେଇଛନ୍ତି ।

— —

## ୬୨୬ଟି କୁଟୀର ଶିଳ୍ପ

ଚଳିତ ଆର୍ଥିକ ବର୍ଷର ଜୁନ୍ ମାସ ସୁଦ୍ଧା ଫୁଲବାଣୀ ଜିଲ୍ଲାରେ ୬୨୬ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥିରେ ୯୬୧ ଜଣ ବ୍ୟକ୍ତିଙ୍କୁ କାମ ଯୋଗାଇ ଦିଆଯାଇଛି । ଏଥିପାଇଁ ୧୦ ଲକ୍ଷ ୩୬ ହଜାର ଟଙ୍କା ବିନିଯୋଗ କରାଯାଇଛି ।

— —

## ଗଣତନ୍ତ୍ର ଦ୍ୱାରା ପ୍ରଗତି ସମ୍ଭବ

— ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟ

ଭାରତର ସ୍ୱାଧୀନତା ଓ ଗଣତନ୍ତ୍ରର ସୁରକ୍ଷା ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ପ୍ରଗତି ହାସଲ କରି ଲାଗି ଗଣଶକ୍ତିକୁ ସଙ୍ଗଠିତ କରିବା ଉପରେ ମୁଖ୍ୟମ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବିଶେଷ ଗୁରୁତ୍ୱ ଆରୋ କରିଛନ୍ତି ।

ସ୍ଥାନୀୟ ଶହୀଦନଗର ପଡ଼ିଆରେ ଦୁର୍ଗାପୂଜା ସମିତି ଉଦ୍ୟମରେ ଆୟୋଜିତ ମନୋଜ୍ଞ ରାବଣ ପୋଡ଼ି ଉତ୍ସବ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ମୁଖ୍ୟମନ୍ତ୍ରୀ ବିଜୟା ଦଶମ ତାତ୍ପର୍ଯ୍ୟ ସଂପର୍କରେ ଆଲୋକପାତ କରିଥିଲେ । ସେ କହି ଯେ ସବୁପ୍ରକାର ଆସୁରୀ ଶକ୍ତିର ବିଲୋପ ପାଇଁ ଦୈବୀଶକ୍ତି ଉନ୍ମେଷ କରିବା ଆବଶ୍ୟକ ଏବଂ ସେଥିପାଇଁ ଗଣଶକ୍ତି ସଙ୍ଗଠିତ କରିବାକୁ ପଡ଼ିବ । ମା ଦୁର୍ଗା ଦେବତାମାନଙ୍କ ସମ୍ମିଳିତ ଶକ୍ତିରୁ ଜାତ ହୋଇ ପରାକ୍ରମୀ ମହିଷାସୁର ମର୍ଦ୍ଦନ କରିଥିବାରୁ ସର୍ବତ୍ର ବିଜୟର ଉତ୍ସବ ପାଳିତ ହେଉ ବୋଲି ଶ୍ରୀ ପଟ୍ଟନାୟକ ବର୍ଣ୍ଣନା କରିଥିଲେ । ଗଣଶକ୍ତି ଦୈବୀଶକ୍ତି ବୋଲି ମତବ୍ୟକ୍ତ କରି ସେ କହିଲେ ଯେତେବେଳେ ଗଣଶକ୍ତି ଅଥବା ଏକତା ସଙ୍ଗଠିତ ଓ ଦୃଢ଼ ହୋଇଛି ସେତେବେଳେ ଖଳଶକ୍ତିର ପରାଜୟ ହୋଇଛି । ଦେଶକୁ ସ୍ୱାଧୀନ କରିବା ଏବଂ ବାରମ୍ବାର ବିଦେଶୀ ଆକ୍ରମଣକୁ ପ୍ରତିହତ କରିବା କେବଳ ଏହିପରି ଶକ୍ତି ଦ୍ୱାରା ସମ୍ଭବପର ହୋଇଛି ବୋଲି ସେ ବୁଝାଇଥିଲେ । ବ୍ୟକ୍ତିଗତ ଜୀବନରେ ମଧ୍ୟ ଦୈବୀ କିମ୍ବା ଆଧ୍ୟାତ୍ମିକ ଶକ୍ତି ପ୍ରୟୋଗ କରି ଆସୁରୀ ଶକ୍ତିକୁ ବିନାଶ କରାଯାଇଥାଏ ବୋଲି ଦର୍ଶାଇ ମୁଖ୍ୟମନ୍ତ୍ରୀ କହିଲେ ଯେ ବ୍ୟକ୍ତି ପକ୍ଷରେ ଯାହା ପ୍ରଯୁଜ୍ୟ, ତାହା ମଧ୍ୟ ସାମାଜିକ ଏବଂ ଜାତୀୟ ଜୀବନରେ ପ୍ରଯୁଜ୍ୟ । ସମଗ୍ର ଦେଶରେ ରାବଣପୋଡ଼ି ଉତ୍ସବ ମାତ୍ର ଅଳ୍ପ କେତେକ ସ୍ଥାନରେ ଆୟୋଜିତ ହେଉଛି ବୋଲି ସୂଚନା ଦେଇ ଶହୀଦ ନଗରରେ ଏପରି ଉତ୍ସବ ଅନୁଷ୍ଠିତ ହେଉଥିବାରୁ ଶ୍ରୀ ପଟ୍ଟନାୟକ ଉଦ୍ୟୋକ୍ତାମାନଙ୍କର ଉଦ୍ୟମ ପ୍ରଶଂସନୀୟ ବୋଲି କହିଥିଲେ ।

ଇତିହାସ ପ୍ରସିଦ୍ଧ ଭୁବନେଶ୍ୱର ସହରର ଅଭିବୃଦ୍ଧି ଦିଗରେ ପୂର୍ବରୁ ଧ୍ୟାନ ଦିଆଯାଇନଥିବାରୁ ମୁଖ୍ୟମନ୍ତ୍ରୀ କ୍ଷୋଭ ପ୍ରକାଶ କରି କହିଲେ ଯେ ବର୍ତ୍ତମାନ ଏହା ଦେଶର ଅନ୍ୟତମ ସୁନ୍ଦର ସହର ରୂପେ ଆଦୃତ ହେଲଣି । ସହରରେ ଯାତାୟାତ ପାଇଁ ରାସ୍ତାଘାଟ ଓ ଆଲୋକ ସଜ୍ଜା ଉପରେ ଯେତିକି ଗୁରୁତ୍ୱ ଦିଆଯାଉଛି, ଏହାର ବାୟୁମଣ୍ଡଳ ତଥା ପରିବେଶକୁ ନିର୍ମଳ ରଖିବା ଉଦ୍ଦେଶ୍ୟରେ ମଧ୍ୟ ବହୁ ପଦକ୍ଷେପ ନିଆଯାଉଛି । ତଦନୁଯାୟୀ ଚନ୍ଦକା ଜଙ୍ଗଲକୁ ଅଭୟାରଣ୍ୟରେ ପରିଣତ କରି ସେଠାରେ ବନ୍ୟଜନ୍ତୁ ସଂରକ୍ଷଣ କରିବା ଏବଂ ସହର ଉପକଣ୍ଠରେ କେବଳ ଇଲେକ୍ଟ୍ରୋନିକ ଓ ଇଞ୍ଜିନିୟରିଂ ଶିଳ୍ପ ସ୍ଥାପନ କରିବା ଦିଗରେ ବ୍ୟବସ୍ଥା ହୋଇଛି । ଭୁବନେଶ୍ୱର ଅଚିରେ ଏକ ଆଦର୍ଶ ସହର ରୂପେ ଗଢ଼ିଉଠିବ ବୋଲି ସେ ଦୃଢ଼ ଆଶା ପ୍ରକାଶ କରିଥିଲେ । ଦଶହରା

ପୂଜା ପଡ଼ିଆକୁ କୌଣସି ବଣିକ ସଂଘକୁ ହସ୍ତାନ୍ତର କରାଯାଇ ନାହିଁ ଏବଂ କୌଣସି ପୂଜା କମିଟିକୁ ହସ୍ତାନ୍ତରୀତ ହେବନାହିଁ ବୋଲି ବିପୁଳ କରତାଳି ମଧ୍ୟରେ ମୁଖ୍ୟମନ୍ତ୍ରୀ ଘୋଷଣା କରି କହିଲେ ଯେ ବରଂ ଏହିପରି ସାର୍ବଜନୀନ ଉତ୍ସବ ପାଇଁ ପଡ଼ିଆକୁ ବ୍ୟବହାର କରିବା ଯଥାର୍ଥ ହେବ । ଏହି ପଡ଼ିଆ ସରକାରଙ୍କର କର୍ତ୍ତୃତ୍ୱାଧୀନ ରହିଛି ବୋଲି ସେ କହିଥିଲେ ।

—

## ପାଣ୍ଡରା ସେତୁ ଉଦ୍‌ଘାଟିତ

ଢେଙ୍କାନାଳ ପୂର୍ବ ଡ଼ିଭିଜନ ଅନ୍ତର୍ଗତ ଭୁବନ-ସୁକିନ୍ଦା ରାସ୍ତାରେ ନିର୍ମିତ ପାଣ୍ଡରା ସେତୁକୁ ଗତ ଅକଟୋବର ୬ତାରିଖରେ କେନ୍ଦ୍ର ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ ବିପୁଳ ଉତ୍ସାହ ଉଦ୍ଦୀପନା ମଧ୍ୟରେ ଉଦ୍‌ଘାଟନ କରିଛନ୍ତି । ଗତବର୍ଷ ଫେବୃୟାରୀ ମାସରେ ପୂର୍ବ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଏହାର ଶିଳାନ୍ୟାସ କରିଥିଲେ । ପ୍ରାୟ ୨୪ଲକ୍ଷ ଟଙ୍କା ବ୍ୟୟରେ ଏହି ସେତୁ ଓ ଏହାର ସଂଯୋଗକାରୀ ରାସ୍ତା ଦ୍ୱୟ ମାତ୍ର ୧୬ ମାସରେ (ଜୁନ, ୧୯୮୪) ସଂପୂର୍ଣ୍ଣ ହୋଇଛି । ୧୭୫ ଫୁଟ ଦୈର୍ଘ୍ୟ ବିଶିଷ୍ଟ ଏହି ସେତୁରେ ୫ଟି ଫୁକାର ରହିଛି ।

ଏ ଉପଲକ୍ଷେ ସେଠାରେ ଅନୁଷ୍ଠିତ ଏକ ବିରାଟ ଜନସମାବେଶରେ ପୂର୍ବମନ୍ତ୍ରୀ ଶ୍ରୀ ବିଶ୍ୱାଳ ଅଧ୍ୟକ୍ଷତା କରିଥିଲେ ।

ଉଦ୍‌ଘାଟକ ଶ୍ରୀ ସିଂହଦେଓ କହିଲେ ଯେ ରାଜ୍ୟବାସୀଙ୍କ ବିପୁଳ ସମର୍ଥନ ଓ ପ୍ରଧାନମନ୍ତ୍ରୀଙ୍କ ଶୁଭେଚ୍ଛା ତଥା ସହାନୁଭୂତି ଫଳରେ ଓଡ଼ିଶାରେ ବର୍ତ୍ତମାନ ଯେପରି ବିଭିନ୍ନ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ ହେଉଛି, ତାହା ଅତୀତରେ ହେଉନଥିଲା । ଶିଳ୍ପ କ୍ଷେତ୍ରରେ ଅନଗ୍ରସରରୂପେ ଚିହ୍ନିତ ହୋଇଥିବା ଦେଶର ୨୪୬ଟି ଅଂଚଳରେ କେନ୍ଦ୍ରୀୟ ଶିଳ୍ପନୀତି ଅନୁଯାୟୀ ଶିଳ୍ପ କାରଖାନା ସ୍ଥାପନପାଇଁ ନିଷ୍ପତ୍ତି ହୋଇଛି ବୋଲି ସେ ପ୍ରକାଶ କରିଥିଲେ । ତଦନୁଯାୟୀ ଓଡ଼ିଶାରେ କେନ୍ଦ୍ରୀୟ ସହାୟତାରେ ଯେଉଁସବୁ ବୃହତ ଶିଳ୍ପ ସ୍ଥାପିତ ହୋଇଛି ସେ ବାବଦରେ ୩୦୦୦ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ବିନିଯୋଗ ହେଲଣି । ତନ୍ମଧ୍ୟରେ "ନାଲକୋ" ପ୍ରକଳ୍ପପାଇଁ ୧୫୦୦ କୋଟି ଟଙ୍କା ଏବଂ ତାଳଚେର ସମ୍ବଲପୁର ରେଳରାସ୍ତାପାଇଁ ୪୨ କୋଟି ଟଙ୍କା ଅନ୍ତର୍ଭୁକ୍ତ । କାମାକ୍ଷା ନଗରରେ ଶିଳ୍ପ ପ୍ରତିଷ୍ଠା କରିବା ଉପରେ ଗୁରୁତ୍ୱ ଆରୋପକରି ଶ୍ରୀ ସିଂହଦେଓ କହିଲେ ଯେ, ସେଠାରେ ଏକ ଟିନିକଲ ସ୍ଥାପନପାଇଁ ପ୍ରସ୍ତାବ ରହିଛି । ଦୈତାରୀ ଇସ୍ପାତ କାରଖାନା ସଂପର୍କରେ ଉଲ୍ଲେଖକରି ସେ କହିଲେ ଯେ ୧ମ ପର୍ଯ୍ୟାୟରେ ପ୍ରଧାନମନ୍ତ୍ରୀ ୪୦୦ କୋଟି ଟଙ୍କା ମଞ୍ଜୁର କରିଛନ୍ତି । ୭ମ ଯୋଜନାରେ ଏହାର ନିର୍ମାଣକାର୍ଯ୍ୟ ତ୍ୱରାନ୍ୱିତହେବ ଏବଂ ଏହା ହେବ ଅତ୍ୟାଧୁନିକ ଇସପାତ କାରଖାନା । ବିଶ୍ୱ ବଜାରରେ ବର୍ତ୍ତମାନ ଇସ୍ପାତ କାରବାରରେ ମାନ୍ଦା ଅବସ୍ଥା ଥିବା ସତ୍ତ୍ୱେ ପ୍ରଧାନମନ୍ତ୍ରୀ ଓଡ଼ିଶା ପ୍ରତି ଯେପରି ସ୍ୱତନ୍ତ୍ର ଦୃଷ୍ଟି ଦେଇଛନ୍ତି ତାହା ବାସ୍ତବିକ ରାଜ୍ୟବାସୀଙ୍କ ପକ୍ଷରେ ଗୌରବର ବିଷୟବୋଲି ସେ ବିପୁଳ କରତାଳି ମଧ୍ୟରେ ପ୍ରକାଶ କରିଥିଲେ । ଶିଳ୍ପବିହୀନ ଜିଲ୍ଲାଗୁଡ଼ିକରେ ପ୍ରତିରକ୍ଷା ମନ୍ତ୍ରଣାଳୟ ଉଦ୍ୟମରେ ଶିଳ୍ପ କାରଖାନା ସ୍ଥାପନ କରିବାକୁ ଯେଉଁ ନିଷ୍ପତ୍ତି ହୋଇଛି, ତଦନୁଯାୟୀ ବଲାଙ୍ଗିର ଜିଲ୍ଲାରେ ଗୋଳାବାରୁଦ କାରଖାନା, ବାଲେଶ୍ୱରରେ ଜାତୀୟ ଟେଷ୍ଟିଂ ରେଞ୍ଜ ଏବଂ ୧୯ କୋଟି ଟଙ୍କାରେ ନିଳଗିରିରେ ରାଡ଼ର ଷ୍ଟେସନ ପ୍ରତିଷ୍ଠିତହେବ । ଫଳରେ ବହୁ ସଂଖ୍ୟାରେ ସ୍ଥାନୀୟଲୋକ କର୍ମନିଯୁକ୍ତି ପାଇବେ ବୋଲି ସେ ଆଶା ପ୍ରକାଶ କରିଥିଲେ । ୭ମ ଯୋଜନା କାଳରେ ଅନୁଗୁଳ ଓ ଭୁବନକୁ କେନ୍ଦ୍ର ସରକାରଙ୍କ କ୍ଷୁଦ୍ର ଓ ମଧ୍ୟମ ସହରର ସମନ୍ୱିତ ବିକାଶ ଯୋଜନାରେ ଅନ୍ତର୍ଭୁକ୍ତ କରିବାକୁ ଶ୍ରୀ ସିଂହଦେଓ ରାଜ୍ୟ ସରକାରଙ୍କୁ ଅନୁରୋଧ ଜଣାଇଥିଲେ ।

ସଭାପତି ଶ୍ରୀ ବିଶ୍ୱାଳ କହିଲେ ଯେ ଏହି ସେତୁ ନିର୍ମିତ ହେବାରୁ ସ୍ଥାନୀୟ ଲୋକଙ୍କର ବହୁ ଦିନର ଦାବୀ ପୂରଣ ହୋଇ ପାରିଛି । ଭୁବନରେ ଟାଉନହଲ ନିର୍ମାଣପାଇଁ ଏବର୍ଷ ୫୦ ହଜାର ଟଙ୍କା ଏବଂ ଆସନ୍ତା ମାସ ପରେ ଅଧିକ ଟଙ୍କା ଦିଆଯିବବୋଲି ସେ ବିପୁଳ ହର୍ଷଧ୍ୱନୀ ମଧ୍ୟରେ ଘୋଷଣା କରିଥିଲେ । ଏହା ବ୍ୟତୀତ ସେଠାରେ ମାର୍କେଟ ପ୍ରକଳ୍ପ ନିର୍ମାଣପାଇଁ ମଧ୍ୟ ସରକାର ସାହାଯ୍ୟ ଦେବେ ।

—

## ପଞ୍ଚାୟତରାଜ ସ୍ଥାପନର ରଜତ ଜୟନ୍ତୀ

ପଂଚାୟତରାଜ ସ୍ଥାପନର ରଜତ ଜୟନ୍ତୀ ପାଳନ ଉପଲକ୍ଷେ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟପୁନର୍ଗଠନ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଉଜମନ୍ ବେହେରା ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି ।

"ଆମ ଦେଶର ସର୍ବତ୍ର ବିପୁଳ ଉତ୍ସାହ ଓ ଉନ୍ମାଦନା ମଧ୍ୟରେ ପଂଚାୟତରାଜର ରଜତଜୟନ୍ତୀ ପାଳିତ ହେଉଛି । ଭାରତର ଚିନ୍ତାନାୟକମାନଙ୍କର ନିଜସ୍ୱ ଚିନ୍ତାରୁ ଜାତ, ଶାସନ ତଥା ଉନ୍ନୟନମୂଳକ କାର୍ଯ୍ୟର ଗଣତାନ୍ତ୍ରିକ ବିକେନ୍ଦ୍ରୀକରଣଭିତ୍ତିକ ପଂଚାୟତରାଜ ଯୋଜନା ତାହାର ୨୫ ବର୍ଷର ବନ୍ଧୁରମସୃଣ ଗତିପଥ ଅତିକ୍ରାନ୍ତହୋଇ ଆଜି ପୂର୍ଣ୍ଣ ଯୌବନରେ ପଦାର୍ପଣ କରିଛନ୍ତି । ୨୫ ବର୍ଷର ଗତିକୁ ସିଂହାବଲୋକନ କଲେ ଅବଶ୍ୟ ଜଣାଯାଏ, ଅଥଚ ଅନାଟନ, ସମ୍ବଳର ସସୀମତା, ସମସ୍ୟାର ବହୁଳତା ତଥା ଗ୍ରାମ୍ୟ ନେତୃତ୍ୱରେ ତ୍ରୁଟି ବିଚ୍ୟୁତିଯୋଗୁଁ, ସମୟ ସମୟରେ ଓ ସ୍ଥଳ ବିଶେଷରେ ପ୍ରଗତିର ରଥଚକ୍ର ମନ୍ଥର ହୋଇଯାଇଛି, କିନ୍ତୁ ଏସବୁ ସତ୍ତ୍ୱେ ପଂଚାୟତିରାଜ ତିଷ୍ଠି ରହିଛି ଏବଂ ଏହାର ଅଗ୍ରଗତି ଅବ୍ୟାହତ ରହିଛି ।

"ବିଭିନ୍ନ ଜାତି, ବିଭିନ୍ନ ଧର୍ମ, ବିଭିନ୍ନ ସଂସ୍କୃତି ଏବଂ ବିଭିନ୍ନ ପରିବେଶର ଅପୂର୍ବ ସମାହାର, ଏଦେଶ ଆଜୁମାରୀ ହିମାଚଳ ଭାରତରେ ସମସ୍ତ ଗ୍ରାମବାସୀମାନଙ୍କର ସାମୂହିକ ବିକାଶର ଭାର ସେହିମାନଙ୍କ ଦାୟିତ୍ୱ ଓ ନିୟନ୍ତ୍ରଣରେ ଛାଡ଼ିଦେଇ ଅଗ୍ରଗତି କରିବାକୁହେଲେ କିଛିଟା ସମୟ ଆବଶ୍ୟକ ଏବଂ ଶାସନ ଓ ଉନ୍ନୟନ କାର୍ଯ୍ୟ ପରିଚାଳନାରେ ଦକ୍ଷତାଲାଭ ନିମିତ୍ତ କେତେକ ପ୍ରାରମ୍ଭିକ ଦୋଷତ୍ରୁଟି ଅପରିହାର୍ଯ୍ୟ, ପ୍ରଗତିର ଏହାହିଁ ଚିରନ୍ତନ ଧାରା ।

"୨୫ବର୍ଷତଳେ ୧୯୫୯ ମସିହାରେ ଅକଟୋବର ୨ତାରିଖ, ପବିତ୍ର ଗାନ୍ଧୀଜୟନ୍ତୀ ଦିବସରେ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ମହାନ୍ ମାନବପ୍ରେମୀ ଜବାହରଲାଲ ନେହେରୁ ଗ୍ରାମବାସୀ-ମାନଙ୍କର ଶାସନ କ୍ଷେତ୍ରରେ ଅନଭିଜ୍ଞତା ଓ ତଦ୍‌ଜନିତ ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ବିରୋଧ ସତ୍ତ୍ୱେ, ପଂଚାୟତରାଜ ମାଧ୍ୟମରେ ଗ୍ରାମାଂଚଳରେ ସ୍ୱାୟତ୍ତ ଶାସନ ତଥା ଉନ୍ନୟନମୂଳକ ଯୋଜନାର ପରିଚାଳନା ଦାୟିତ୍ୱ ସେହି ଗ୍ରାମାଂଚଳରେ ଲୋକମାନଙ୍କ ହାତରେ ଟେକି ଦେଇଥିଲେ । ଗ୍ରାମାଂଚଳରେ ଲୋକମାନଙ୍କ ଶକ୍ତି ଉପରେ ଅତୁଟ ଭରସା ରଖି, ପଂଚାୟତରାଜ ଯୋଜନାର ଶୁଭାରମ୍ଭର ଅବ୍ୟବହିତ ପୂର୍ବରୁ ସେ ତାଂକର ପ୍ରାଣର ବାଣୀ ଏହିପରି ଶୁଣାଇଥିଲେ—'ମୁଁ ଦୃଢ଼ ନିଶ୍ଚିତ ଯେ ପର୍ଯ୍ୟାୟକ୍ରମେ କ୍ଷମତାର ଅଧିକରୁ ଅଧିକ ବିକେନ୍ଦ୍ରୀକରଣ ଓ ଦାୟିତ୍ୱର ବଂଟନ କରାହେବା ବାଂଛନୀୟ । ଅନୁଭୂତି ଓ ପ୍ରଶିକ୍ଷଣର ଅଭାବରୁ ଏହାଦ୍ୱାରା ଭୁଲଭ୍ରାନ୍ତି ଘଟିବାର ବିପଦ ନିଶ୍ଚୟ ଅଛି । ସେ ବିପଦକୁ ହସିହସି ବରଣ କରିବାକୁ ହେବ । ଦାୟିତ୍ୱର ପ୍ରସାରଣ ଦ୍ୱାରା ହିଁ ଆମେ ଆମ ଲୋକଂକୁ ଠିକଭାବରେ ପ୍ରଶିକ୍ଷଣ ଦେଇପାରିବା ।

"ଏହି ମହାନ୍ ଜନନାୟକଂକ ଦିବ୍ୟଦୃଷ୍ଟିରୁ ପ୍ରତିଫଳିତ ବାଣୀ ଆଜି ସଫଳ ହୋଇଛି । ୫ବର୍ଷ ଧରି ପଂଚାୟତରାଜ ନୈତିକ, ସାମାଜିକ ତଥା ରାଜନୈତିକ ଚେତନାର କ୍ରମବିକାଶର ଏହା ପ୍ରଧାନ ଭିତ୍ତିଭୂମି ହୋଇଛି । ପଂଚାୟତରାଜର ମୂଲ୍ୟାୟନ କରି ଆଜି ବହୁ ଚିନ୍ତାଶୀଳ ବ୍ୟକ୍ତି ନିମ୍ନ ପ୍ରକାର ମତ ବ୍ୟ କରିଛନ୍ତି ।

"ରାଜନୈତିକ ଦୃଷ୍ଟିକୋଣରୁ ଦେଖିଲେ, ଏହି ଯୋଜନ ଦ୍ୱାରା ଗ୍ରାମାଂଚଳରେ ଗଣତାନ୍ତ୍ରିକ ଭାବଧାରାର ବୀଜବପ କରାଯାଇ ପାରିଛି, ଶାସନ ପରିଚାଳନା ଦୃଷ୍ଟିରୁ ଏହା ଶାସ ଓ ଶାସିତଙ୍କୁ ନିକଟତର କରିଛି, ସାମାଜିକ ଓ ସାଂସ୍କୃତି କ୍ଷେତ୍ରରେ ବିଚାରକଲେ ଏହା ଆଧୁନିକ ଦୃଷ୍ଟିକୋଣପୂର୍ଣ୍ଣ ଯୁ ନେତୃତ୍ୱ ବିକାଶ ଘଟାଇ ପାରିଛି ଏବଂ ସର୍ବଶେଷରେ ଉନ୍ନୟନମୂଳକ କାର୍ଯ୍ୟର ଆଗ୍ରହ ଗ୍ରାମବାସୀମାନଂକ ମନରେ ସୃଷ୍ଟି କରିପାରିଛି ।

"ଆମ ଓଡ଼ିଶା ତଥା ସାରା ଭାରତବର୍ଷରେ ଆ ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମ ତଥା ବ୍ୟାପକ ବହୁମୁଖ ଗ୍ରାମ ଉନ୍ନୟନ ଯୋଜନା ମାଧ୍ୟମରେ ଗ୍ରାମାଂଚଳ ନବକଳେବର ନେବାକୁ ଯାଉଛି । ପଂଚାୟତିରାଜ ସଂସ୍ଥା ଏସବୁ ଯୋଜନା ସହ ନିବିଡ଼ଭାବେ ସଂଶ୍ଳିଷ୍ଟ ହେବା ବାଂଛନୀୟ । ଆଜିର ଏ ଶୁଭ ଅବସରରେ ଓଡ଼ିଶାର ୩୧୪ ପଂଚାୟତ ସମିତି ଓ ସମସ୍ତ ପଞ୍ଚାୟତରେ ସମସ୍ତ ସଭ୍ୟ, ସରପଂଚ ଏବଂ ପଂଚାୟତରାଜ ସଂସ୍ଥା ସହ ସଂପୃକ୍ତ ସମସ୍ତ ବେସରକାରୀ ଓ ସରକାରୀ କର୍ମଚାରୀମାନଂକୁ ମୁଁ ହାର୍ଦ୍ଦିକ ଅଭିନଂଦନ ଜଣାଉଛି ଏବଂ ପଂଚାୟତିରାଜ ଯୋଜନାର ଅଧିକରୁ ଅଧିକ ସଫଳ କାମନା କରୁଛି ।




ଭବାନୀ ପାଟଣାରେ ଶିଶୁ ମେଳା

OGP—M-P VI ( I. & P. R.) 66—27-1-1985


ଟିକି ବୋହୂଟି ସେ ଲଜ୍ଜାବତୀ
Waiting for bride groom

Vol. XLI No. 4 UTKAL PRASANGA Regd. No. O-05/84
Licence No. C. R. N. P. 5—Licensed to post without Pre-Payment





*The trailing clouds of glory .......*



ସରଗ ସପନ
କେତେ
ଧୂଳିର ଧରଣୀ
ପଥେ





